# କଥା ଗୋଟିକୁ କବିତାଟିଏ

ପଞ୍ଚମ ଖଣ୍ଡ

ଲେଖକ :

ଉଦୟନାଥ ଷଡ଼ଙ୍ଗୀ

ପ୍ରକାଶକ :

ରବୀନ୍ଦ୍ରନାଥ ମହାନ୍ତି
କଟକ

ପ୍ରଥମ ସଂସ୍କରଣ—୧୯୮୧

ମୂଲ୍ୟ :

ଦେଢ଼ ଟଙ୍କା

ମୁଦ୍ରାକର :

ନିଉ ପବ୍ଲିଶିଂ ପ୍ରେସ୍,

ବାଲୁବଜାର, କଟକ-୨

# KATHA GOTIKU KABITATIE

Fifth Part

*Writer :*

**Udayanath Sarangi**

*Publisher :*

**Rabindranath Mohanty**

*First Edition* : **1981**

*Price :*

**Rupee One & Half Only**

*Printer :*

**New Publishing Press**
Balubazar, Cuttack-2

# ବୀରଭଦ୍ର ସିଂହ

ନାମ ତାଙ୍କର ବୀରଭଦ୍ର ସିଂହ । ଅବଶ୍ୟ ବଡ଼ ବୀର, ସାହସୀ; ମାତ୍ର ଆଦୌ ଭଦ୍ର ନୁହନ୍ତି । ଅତି କଳହା, କ୍ଷଣକୋପୀ । କଥାବାର୍ତ୍ତା ହେଉ ହେଉ କାହାର ସହିତ ମତ ନ ମିଳଲେ ସାଙ୍ଗେସାଙ୍ଗେ ରାଗିଯାଆନ୍ତି । ତାଙ୍କୁ ଗାଳିଗୁଲଜ କରନ୍ତି, ନାନାପ୍ରକାର ଧମକ ଦିଅନ୍ତି । ଏପରି କି ହାତ ଚେଙ୍କ ମାଡ଼ ଦେବାକୁ ବାହାରି ପଡ଼ନ୍ତି । ତେଣୁ ତାଙ୍କ ସାଙ୍ଗସାଥୀ ତାଙ୍କୁ ମନେମନେ ଡରନ୍ତି । ବେଶୀ କେହି ତାଙ୍କ ସହିତ ମିଳାମିଶା କରନ୍ତି ନାହିଁ ।

ତାଙ୍କ ଘର ପଞ୍ଜାବରେ । ଭାରତୀୟ ସୈନ୍ୟବାହିନୀର ସେ ଜଣେ ହାବିଲଦାର । ତାଙ୍କ ବୀରତ୍ୱ, ସାହସ ଦେଖି ଉପର ଅଫିସର ତାଙ୍କ ଉପରେ ଖୁବ୍ ଖୁସି । ଅଳ୍ପ ଦିନ ମଧ୍ୟରେ ସାମାନ୍ୟ ସୈନ୍ୟ ପଦରୁ ସେ ହାବିଲଦାର ହୋଇଗଲେ । ଗୋଟିଏ ସୈନ୍ୟବାହିନୀର ମୁଖ୍ୟ ।

ବୀରଭଦ୍ର ପାଠ ପଢ଼ି ନ ଥିଲେ । ପିଲା ଦିନେ ଅକ୍ଷର ମଡ଼େଇ ମଡ଼େଇ ନିଜ ନାମଟି କେବଳ ଦସ୍ତଖତ କରିପାରୁଥିଲେ । ତା ବ୍ୟତୀତ ଆଉ କିଛି ଲେଖିପାରନ୍ତି ନାହିଁ—କି ପଢ଼ିପାରନ୍ତି ନାହିଁ । କିନ୍ତୁ ବଡ଼ ବୁଦ୍ଧିଆ । କିପରି ଯୁଦ୍ଧକଲେ ଶତ୍ରୁକୁ ଜୟ କରିବାକୁ ହେବ, ସେ କୌଶଳ ସଙ୍ଗେସଙ୍ଗେ ତାଙ୍କ ମୁଣ୍ଡରେ ଖେଳିଯାଏ । ଯେତେ ଯୁଦ୍ଧର ଦାୟିତ୍ୱ ତାଙ୍କୁ ଦିଆଯାଇଛି, ସବୁଥିରେ ସେ ଜୟଲାଭ କରିଛନ୍ତି, ପ୍ରଶଂସା ପାଇଅଛନ୍ତି ।

ଭାରତ ପାକିସ୍ଥାନ ଯୁଦ୍ଧ ଚାଲିଥାଏ । ପଞ୍ଜାବରୁ ସୈନ୍ୟବାହିନୀ ଆସିଗଲେ ଆସାମର ସୀମାନ୍ତରେ ଲଢ଼ିବାକୁ । ସେମାନଙ୍କ ମଧ୍ୟରେ ହାବିଲଦାର ବୀରଭଦ୍ର ସିଂହ ମଧ୍ୟ ଆସିଥିଲେ ନିଜ ଫଉଜକୁ ଧରି ।

ଯୁଦ୍ଧରେ ଭାରତ ଜୟଲାଭ କଲା । ପାକିସ୍ଥାନ ହାରିଗଲା । ଦୁଇ ଦେଶ ମଧ୍ୟରେ ସନ୍ଧି ହେଲା । ଯୁଦ୍ଧର ସମାପ୍ତି ଘଟିଲା ।

ସୈନ୍ୟବାହିନୀ ନିଜ ନିଜ ଦେଶକୁ ଫେରିଯିବେ ।

ବହୁତ ଦିନ ହେଲା ଘରଦ୍ୱାର ଛାଡ଼ି ଆସିଛନ୍ତି । ବାପ ମା, ପିଲାପିଲିଙ୍କୁ ଦେଖି ନାହାନ୍ତି । ତେଣୁ ଘରକୁ ଫେରିଯିବା ପାଇଁ ସମସ୍ତଙ୍କ ମନ ଉଚ୍ଛନ୍ନ ହୋଇଉଠିଲା । ପ୍ରଧାନ ଅଫିସରୁ ଯେ ଯେତେ ଶୀଘ୍ର ଆଦେଶ ପାଇଯିବ, ସେ ସେତେ ଚଞ୍ଚଳ ନିଜ ଗ୍ରାମକୁ ପଳାଇଯିବ । ସେଇଥିପାଇଁ ସମସ୍ତେ ବ୍ୟାକୁଳ ହୋଇଉଠିଲେ । ଅଫିସକୁ ବାରମ୍ବାର ଦଉଡ଼ାଦଉଡ଼ି କଲେ । କାଗଜପତ୍ର ଠିକ୍ କରିଦେବାକୁ ଅଫିସର କିରାଣୀମାନଙ୍କୁ ଖୁସାମତ କଲେ, ନେହୁରା ହେଲେ ।

ନିୟମ ଥିଲା, କୌଣସି ସୈନ୍ୟଙ୍କୁ ଆସାମ ଅଫିସରେ ସେମାନଙ୍କ ଦରମା ଦିଆଯିବ ନାହିଁ । ଏଠାରେ ଖଣ୍ଡିଏ ପରିଚୟ ପତ୍ର ଲେଖି ଦିଆଯିବ । ସେଥିରେ ସୈନ୍ୟର ନାମ, ପିତାଙ୍କ ନାମ, ଠିକଣା ତ ଲେଖାଯିବ ଏବଂ ତାଙ୍କ ମୁହଁ, ଦେହରେ କେଉଁଠି କି ଚିହ୍ନ ଅଛି, ତାହା ବର୍ଣ୍ଣନା କରାଯିବ । ସେହି ପରିଚୟପତ୍ର ଦେଖାଇ ସେ ନିଜ ରାଜ୍ୟ ଟ୍ରେଜେରୀରୁ ତାଙ୍କ ଦରମାଟଙ୍କା ନେବେ ।

ସବୁ ରାଜ୍ୟର ସୈନ୍ୟମାନଙ୍କର ଭାରି ଭିଡ଼ । କିଏ ଆଗ ପରିଚୟ-ପତ୍ରଟି ହାସଲ କରିବ—ତା ହେଲେ ଘରକୁ ଚାଲିଯିବ । ସେଥିପାଇଁ ସମସ୍ତଙ୍କ ମନ ଅସ୍ଥିର । ମାତ୍ର ଅଫିସରେ କିରାଣୀ ଅଳ୍ପ । ସମସ୍ତଙ୍କ ପରିଚୟପତ୍ର ଠିକ୍‌ରୂପେ ଲେଖି, ସେନାପତିଙ୍କ ଦସ୍ତଖତ କରାଇନେବା ସହଜ ବ୍ୟାପାର ନୁହେ ।

ଯେ ଯେତେ ଦଉଡ଼ାଧାପଡ଼ କରି, ଅନୁନୟ ବିନୟ ହୋଇ କିରାଣୀକୁ ହାତ କରିପାରିଲା, ସେ ସେତେ ଶୀଘ୍ର ପରିଚୟପତ୍ର ପାଇଗଲା । ସୀମାନ୍ତ ଅଞ୍ଚଳ ଛାଡ଼ି ନିଜ ରାଜ୍ୟକୁ ଚାଲିଗଲା । ଯେଉଁମାନେ ପରିଚୟପତ୍ର ପାଇ ନ ପାରିଲେ, ସେମାନଙ୍କ ମନ ବେଶି ଅଥୟ ହେଲା ।

ବୀରଭଦ୍ର ସିଂହ ତ ଅନୁନୟ ବିନୟ କରି ଜାଣେ ନାହିଁ । କାହାରିକୁ ଖୁସାମତ କରିବା କି ପଦେ ଦୁଇ ପଦ କଅଁଳ କଥା କହି ତା ମନ ନେବା ତାହା ସ୍ୱଭାବରେ ନାହିଁ । ତେଣୁ ପଛକୁ ପଡ଼ି ରହିଲା ।

ଅଫିସକୁ ପରିଚୟପତ୍ର ଆଣିବାକୁ ଦୁଇତିନି ଥର ଦଉଡ଼ିଲା; ମାତ୍ର ଅନ୍ୟ କାମ ଭିଡ଼ରେ କିରାଣୀ ତା କାମ କରିପାରୁ ନ ଥାଏ । ତା ନାମ ଯେ ତାଲିକାର କେତେ ତଳକୁ ଚାଲିଗଲାଣି, ତାକୁ ଖୋଜି ବାହାର କରିବା ସମ୍ଭବ ହେଉ ନ ଥାଏ ।

ବୀରଭଦ୍ର ଅଫିସକୁ ପ୍ରତିଦିନ ବାରମ୍ବାର ଦଉଡ଼ ବଡ଼ ବିରକ୍ତ ହୋଇଉଠିଲା । ପୁଣି ନିଜ ସାଙ୍ଗସାଥୀ, ନିଜ ଅଞ୍ଚଳର ଲୋକ ଚାଲିଗଲେଣି । ତା ମନ ବେଶି ଉଚ୍ଛନ୍ନ ହେଲା । ସେ କିରାଣୀ ଉପରେ ଖୁବ୍ ରାଗିଗଲା ।

ସେଦିନ ପରିଚୟପତ୍ର ଆଣିବାକୁ ଗଲା । ମାତ୍ର କିରାଣୀକୁ ସମୟ ହେଲା ନାହିଁ । ସେ କହିଲେ, "ଯାଅ, କାଲି ଆସିବ ।"

ଏଥିରେ ବୀରଭଦ୍ର ସିଂହର ରାଗ ବହୁତ ବଢ଼ିଗଲା । ସେ ଅଣ୍ଟାରେ ବନ୍ଧା ହୋଇଥିବା ଖୋଳରୁ ଛୁରି ବାହାର କରିପକାଇଲା । କିରାଣୀକୁ ଦେଖାଇ କହିଲା, "ଆଜି ଯଦି ମୋତେ ପରିଚୟପତ୍ର ନ ଦେବ, ତେବେ ଏହି ଛୁରିରେ ତୁମ କାନ ଦୁଇଟା କାଟିଦେବି ।"

କିରାଣୀ ମଧ୍ୟ ଡରିଯିବା ଲୋକ ନୁହେଁ । ସେ ହାତରେ ଧରିଥିବା କଲମଟିକୁ ଦେଖାଇ ଜବାବ ଦେଲା, "ମୁଁ ଏହି କଲମରେ ତୁମ କାନ ଦୁଇଟା ଖୋଢ଼ି ଦେବି ।"

ଏଇ ପାଟିତୁଣ୍ଡ ହେବାରୁ ସେଠାରେ ବହୁତ ଲୋକ ରୁଣ୍ଡ ହୋଇଗଲେ । ବଡ଼ ଅଫିସରଙ୍କ କାନକୁ ଏ କଥା ଗଲା । ସବୁ ଶୁଣି ସେ ଆଦେଶ ଦେଲେ, ବୀରଭଦ୍ର ସିଂହଙ୍କୁ ଆଜି ହିଁ ପରିଚୟପତ୍ର ଦେବାକୁ ହେବ ।

କିରାଣୀ ବାଧ୍ୟ ହୋଇ ଅନ୍ୟ କାମ ବନ୍ଦ ରଖିଲେ । ବୀରଭଦ୍ର ସିଂହଙ୍କ ପରିଚୟପତ୍ର ଖୋଜି ବାହାର କଲେ । ସେଥିରେ ତାଙ୍କର ନାମ, ଠିକଣା ଓ ଅନ୍ୟାନ୍ୟ ପରିଚୟ ବର୍ଣ୍ଣନା କରି ଲେଖିଲେ ଓ ତାଙ୍କ ହାତକୁ ବଢ଼ାଇଦେଲେ । ବୀରଭଦ୍ର ତ ପଢ଼ି ଜାଣନ୍ତି ନାହିଁ । ଆଉ କାହାକୁ ଦେଖାଇ ପଢ଼ାଇ ନେବାକୁ ସମୟ ନାହିଁ । ସେ ପରିଚୟପତ୍ରଟି ଧରି ଅଫିସରଙ୍କ ପାଖକୁ ଗଲେ । ସେନାପତି ଦସ୍ତଖତ କରିଦେବାରୁ ମନ ଖୁସିରେ ସଲାମ ପକାଇ ଚାଲି ଆସିଲେ ।

କେତେ ଦିନ ପରେ ଘରେ ପହଞ୍ଚିଲେ । ସେ ଯେପରି ଖୁସି, ବାପ, ମା ଓ ପିଲାମାନେ ଛଅ ମାସ ପରେ ତାଙ୍କୁ ଦେଖି ସେହିପରି ଖୁସି ହେଲେ । ଦୁଇ ତିନି ଦିନ ବିଶ୍ରାମ ନେଲା ପରେ ବୀରଭଦ୍ର ନିଜ ଦରମା ଟଙ୍କା ଆଣିବାକୁ ଟ୍ରେଜେରୀକୁ ଗଲେ ।

ଟ୍ରେଜେରୀ ଅଫିସର ପରିଚୟପତ୍ର ପଢ଼ି ବୀରଭଦ୍ରଙ୍କ ମୁହଁକୁ ଚାହିଁ କହିଲେ, "ତୁମେ ଏ ଲୋକ ନୁହଁ । ଅନ୍ୟ କାହାର ପରିଚୟପତ୍ର ଆଣିଅଛ । ତୁମକୁ ଟଙ୍କା ଦିଆଯିବ ନାହିଁ ।"

ଏହା ଶୁଣି ବୀରଭଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । ସେ ତାଙ୍କ ନାମ, ପିତାଙ୍କ ନାମ, ଘର ଠିକଣା ସବୁ କହିଗଲେ ।

ଟ୍ରେଜେରୀ ଅଫିସର କହିଲେ, "ଏ ସବୁ କଥା ମିଳିଯାଉଛି । ମାତ୍ର ଗୋଟିଏ ଅଡ଼ୁଆ ।"

"ଅଡ଼ୁଆଟା କଅଣ ?"

ଟ୍ରେଜେରୀ ଅଫିସରଙ୍କ ଉତ୍ତର—ଏଥିରେ ଲେଖାଅଛି, ବୀରଭଦ୍ର ସିଂହଙ୍କର ସମ୍ମୁଖ ଦାନ୍ତ ଖଣ୍ଡିଏ ଭାଙ୍ଗିଯାଇଛି । ମାତ୍ର ତୁମ ପାଟିରେ ତ ସବୁ ଦାନ୍ତ ପୂରାପୂରି ରହିଛି । ତୁମେ ଏ ଲୋକ ହେଲ କିପରି ? ତୁମକୁ ଟଙ୍କା ଦିଆଯିବ ନାହିଁ ।

ବୀରଭଦ୍ରଙ୍କର ଆସାମ ଅଫିସ କଥା ମନେ ପଡ଼ିଗଲା । ସେ ଯେତେବେଳେ ଛୁରୀ ଦେଖାଇ କିରାଣୀର କାନ କାଟିଦେବେ ବୋଲି ଧମକ ଦେଇଥିଲେ, ସେତେବେଳେ କିରାଣୀ କହିଥିଲେ, ଏ କଲମରେ ତୋ ଦାନ୍ତ ଭାଙ୍ଗିଦେବି । ସେହି କିରାଣୀ କଥା ହିଁ ସତ ହେଲା । ଏ ତ ତା କାନ କଦାପି କାଟିପାରନ୍ତେ ନାହିଁ; ସେ କିନ୍ତୁ କଲମରେ ଏହାଙ୍କ ଦାନ୍ତ ଭାଙ୍ଗିଦେଇଛି ।

ବୀରଭଦ୍ର ମଉନରେ ଘରକୁ ଫେରିଆସିଲେ । ଡାକ୍ତରଖାନାକୁ ଯାଇ ଉପର ମାଢ଼ିରୁ ଆଗ ଦାନ୍ତ ଖଣ୍ଡିଏ ଓପାଡ଼ି ପକାଇଲେ । ଭଲ ହେଲା ପରେ ଟ୍ରେଜେରୀକୁ ପୁଣି ଗଲେ ।

ଟ୍ରେଜେରୀ ଅଫିସର ପରିଚୟପତ୍ର ପଢ଼ି ବୀରଭଦ୍ର ସିଂହଙ୍କ ମୁହଁ ଦେଖି କହିଲେ, "ଠିକ୍ ଅଛି । ତୁମେ ହିଁ ପ୍ରକୃତ ଲୋକ ।"

ସମସ୍ତ ପାଉଣା ହିସାବ କରି ଟଙ୍କା ତାଙ୍କ ହାତକୁ ବଢ଼ାଇ ଦେଲେ ।

ବୀରଭଦ୍ର ନିଜ ପରିଶ୍ରମର ଫଳ ଏତେ ଗୁଡ଼ିଏ ଟଙ୍କା ପାଇଥିବାରୁ ଯେତିକି ଖୁସି ହେଲେ, ନିଜ କ୍ରୋଧ ବଶତଃ ସୁନ୍ଦରଗୋଟି ଦାନ୍ତ ହରାଇଥିବାରୁ ତାଙ୍କ ମନରେ ସେତିକି ଦୁଃଖ ହେଲା ।



# ଆମ ବାଘ ଶିକାର

ଅନୁଭୂତିଟା ମୋର ଜଣେ ଶିକ୍ଷକ-ବନ୍ଧୁଙ୍କର । ତେଣୁ ତାଙ୍କର ମୁହଁରେ ହିଁ ବିବରଣୀ ବର୍ଣ୍ଣନା କରିବା ଠିକ୍ ହେବ ।

କଟକ ସହରରେ ମୋର ଜନ୍ମ । ସେଇଠାରେ ବଢ଼ିଛି, ପଢ଼ିଛି । ସରକାରୀ ଚାକିରି ତ । ଫୁଲବାଣୀ ଜିଲ୍ଲାର ଗୋଟିଏ ନିପଟ ମଫସଲ ଅଞ୍ଚଳକୁ ମୋର ବଦଳି ହେଲା । ସେଠାରେ ବଜାର ନାହିଁ କି ଦୋକାନ ନାହିଁ । ଗୋଟିଏ କିଛି ଦରକାରୀ ଜିନିଷ କିଣିବାକୁ ହେଲେ କୋଡ଼ିଏ କିଲୋମିଟର ଦୂର ଫୁଲବାଣୀ ସହରରୁ ତାହା ମଗାଇବାକୁ ପଡ଼ୁଥାଏ ।

ସେଠାରେ ଜଣେ ଡାକ୍ତର, ଜଣେ ପୁଲିସ ସବ୍ଇନ୍ସପେକ୍ଟର ଆଉ ଆମେ ତିନି ଜଣ ଶିକ୍ଷକ । ଏଇ ପାଞ୍ଚ ଜଣ ବାହାର ଲୋକ—ବଡ଼ବାବୁ ।

ଡାକ୍ତରବାବୁ ସିନା ଅନ୍ୟ ରୋଗୀଙ୍କୁ ଔଷଧ ଦେଇ ଭଲ କରନ୍ତି; କିନ୍ତୁ ନିଜ ରୋଗ ଭଲ କରିପାରନ୍ତି ନାହିଁ । କାରଣ, ସର୍ଦ୍ଦି ତାଙ୍କର ସବୁ ଦିନ ଲାଗି ରହିଥାଏ । ମଝିରେ ମଝିରେ ପେଟକୁ ମଧ୍ୟ ମାରେ । କିନ୍ତୁ ଶିକାରରେ ବଡ଼ ସଉକ । ଗୋଟିଏ ବନ୍ଧୁକ ରଖିଅଛନ୍ତି । ବର୍ଷକୁ ବର୍ଷ ଲାଇସେନ୍ସ ପାଇଁ ସରକାରଙ୍କୁ ଟଙ୍କା ଦିଅନ୍ତି । କେତେ ଥର ବଣ କୁକୁଡ଼ା ଶିକାର କରି ଆମମାନଙ୍କ ଘରକୁ ପଠାଇଦିଅନ୍ତି । ସେଥିପାଇଁ ସମସ୍ତେ ତାଙ୍କ ଉପରେ ଖୁସି ।

ଚାରିଆଡ଼ୁ ଶୁଣାଗଲା, ବାଘ ମାତିଛି । ମଣିଷଖିଆ ବାଘ । ରାତିରେ ଗାଁ ଭିତରେ ପଶି ଛେଳି, ମେଣ୍ଢା, ଘୁଷୁରି ଟାଣି ନେଉଛି ।

କ୍ରମେ ତାର ବହପ ବଢ଼ିଗଲା । ଗାଈ, ଗୋରୁ, ମଇଁଷି ମାରିଲା । ଏକୁଟିଆ ଦେଖିଲେ ଓର ଉଣ୍ଡି ମଣିଷଙ୍କୁ ବି ଘାଏଲ କଲା । ଜଣେ ଦୁଇ ଜଣ ଲୋକଙ୍କର ବି ପତ୍ତା ମିଳିଲା ନାହିଁ ।

ବାଘ ଭୟରେ ଚାରିଆଡ଼େ ଗୋଟାଏ ଆତଙ୍କ ଖେଳିଗଲା । ସଞ୍ଜ ହେଉ ହେଉ ତାଟିକବାଟ ପଡ଼ିଗଲା । ଦିନରେ ମଧ୍ୟ ଲୋକମାନେ କଣ୍ଟା ଝଟାକୁ ଯିବା ବନ୍ଦ କରିଦେଲେ । ଜଙ୍ଗଲ ତ ଗାଁ ମୁଣ୍ଡକୁ ଲାଗିଛି । ସେଠାରୁ କାଠ, ପତ୍ର, ଫଳମୂଳ ନ ଆଣିଲେ ଚଳିବେ କିପରି ?

ଦିନକୁ ଦିନ ନାନା କଥା ଶୁଣାଗଲା । କିଏ କହିଲା ମୋ ପୋଢ଼ଟାକୁ ବାଘ ଖାଇଗଲା । ଅମୁକ ଗ୍ରାମର ଶଗଡ଼ିଆକୁ ବାଘ ଟାଣି ନେଇଛି । ସମସ୍ତଙ୍କ ମୁହଁରେ ସବୁବେଳେ ଖାଲି ସେହି ବାଘ କଥା ।

ସେଦିନ ଜଣେ ବୁଢ଼ା ଶବର କାନ୍ଦ କାନ୍ଦ ଆସି କହିଲା, "ବାଘ କାଲି ମୋ ବଳଦଟାକୁ ମାରି ପକାଇଛି । ଆମେ ଗାଁବାଲା ଢୋଲ ପିଟିଲୁ, ନିଆଁ ହୁଳା ଜାଳିଲୁ । ତେଣୁ ସେ ବଳଦକୁ ବଣ ଭିତରକୁ ନେଇଯାଇ ପାରିଲା ନାହିଁ । ମଡ଼ାଟା ଅଳ୍ପ ଦୂରରେ ପଡ଼ିଛି ।

ମୁଁ ସହରବାସିନ୍ଦା । ବିଲୁଆଟାଏ ବି ପଦାରେ ଦେଖି ନାହିଁ । ବାଘ ଦେଖିଛି ଅବଶ୍ୟ ସର୍କସରେ—ଲୁହାପିଞ୍ଜରା ଭିତରେ । ନନ୍ଦନ କାନନରେ ମଧ୍ୟ ଦୂରରୁ ରହି ଦେଖିଛି । କିନ୍ତୁ ଗୁଣଗାରିମା ପଢ଼ିଛି ବହିରେ । ପିଲାଦିନେ ପୁଣି ତା ବିଷୟରେ ରଚନା ଲେଖି ପରୀକ୍ଷାରେ ବେଶି ନମ୍ବର ପାଇଛି ।

ବାଘ ମାଡୁଛି, ମଣିଷ ଖୁଣ୍ କଲାଣି । ପ୍ରତିଦିନ ରାତିରେ କିଛି ନା କିଛି କାଣ୍ଡ କରୁଥିବାର ଶୁଣାଯାଉଛି । ଏହି କଥା ଶୁଣିଶୁଣି ମୋ ଛାତି ଭିତରଟା ଥରିଉଠିଲା । ସେହି ଶଗଡ଼ିଆ ଭଳି ମୁଁ ଯେ ଦିନେ ବାଘ ପେଟକୁ ଯିବି, ମନରେ ଏଇ କଥା ଖେଳିଲା ।

ଡାକ୍ତରବାବୁ ବଡ଼ ଖୁସି । ତାଙ୍କ ଶିକାରୀପଣିଆ ଦେଖାଇବାର ଗୋଟାଏ ମଉକା ମିଳିଗଲା ।

ମୋତେ କହିଲେ, "ଏ ବାଘଟାକୁ ମାରିବାକୁ ହେବ । ଲୋକେ ଆତଙ୍କରୁ ରକ୍ଷା ପାଇବେ । ଆମ ମାନ ସମ୍ମାନ ବଢ଼ିଯିବ । ପୁଣି ସରକାରଙ୍କଠାରୁ ପୁରସ୍କାର ବି ମିଳିବ । ମୁଁ ଶିକାର କରିବାକୁ ଯିବି । ଆପଣ ମୋର ସାଥୀ ହୁଅନ୍ତୁ ।"

ମୁଁ ବା ମୋର ଡରକୁଳାପଣିଆଟା ପ୍ରକାଶ କରିଥାନ୍ତି କିପରି ? ଇଚ୍ଛା ହେଉ ନ ଥିଲେ ମଧ୍ୟ ଡାକ୍ତରବାବୁଙ୍କ କଥାରେ ହଁ ଭରିଦେଲି ।

ଶବର ବୁଢ଼ାକୁ ବରାଦ ହେଲା—ମଡ଼ାକୁ ଯେପରି କେହି ଖାଇ ନ ଯାଏ, ସାବଧାନରେ ଜଗି ରହିବ । ବାଘ ନିଶ୍ଚୟ ରାତିରେ ତା ଶିକାର ପାଖକୁ ଆସିବ । ସେତେବେଳେ......।

ବାରମ୍ବାର ଡାକ୍ତରବାବୁଙ୍କ ଉତ୍ସାହ ବାଣୀ ଶୁଣି ମୋ ମନରୁ ଭୟ ଦୂର ହୋଇଗଲା । ସନ୍ଧ୍ୟାରେ ବାଘ ଶିକାରକୁ ଯିବା ଠିକ୍ ହେଲା ।

ପଶୀବାଘ୍ରା ବସ୍ ଡ୍ରାଇଭର ହାତରେ ଫୁଲବାଣୀ ବଜାଉଛୁ ଗୋଟାଏ ବଡ଼ ଟର୍ଚ୍ଚ ବର୍ଣ୍ଣା, ବାଟେରୀ, କିଛି ବସ୍ତୁ ଅଣାଇଲୁ ।

ଡାକ୍ତରବାବୁ ବନଯାକ ତାଙ୍କ ବନ୍ଧୁକ ସଫା କରିବାରେ ଲାଗିଗଲେ । ସେଦିନ ଡାକ୍ତରଖାନା ବନ୍ଦ । ମୁଁ ଅବଶ୍ୟ ସ୍କୁଲକୁ ଗଲି । ପିଲାମାନଙ୍କୁ ଯାହା ଶିକ୍ଷା ଦେଲି, ତାହା କେବଳ ବାଘ ସମ୍ପର୍କରେ ।

ମୋଟଉପରେ ବାଘ ହିଁ ଦିନଯାକ ଆମ ମନକୁ ସରଗରମ କରି ରଖିଥିଲା ।

ରାତିଯାକ ଅନିଦ୍ରାରେ ବସିରହିବାକୁ ପଡ଼ିବ । ବାଘ କେଉଁ ମୁହୂର୍ତ୍ତରେ ମଡ଼ା ପାଖକୁ ଆସିବ, ଠିକ୍ ନାହିଁ । ଟିକିଏ ଅସାବଧାନ ହେଲେ ସବୁ ମାଟି ହୋଇଯିବ । ହୁଏତ ଜୀବନ ଯାଇପାରେ । ଡାକ୍ତରବାବୁ କାନେ କାନେ ଏଇ ଶିକ୍ଷା ଦେଉଥାନ୍ତି ।

ପ୍ରବଳ ଉତ୍ସାହରେ ଅପରାହ୍ଣ ସ୍ଵରଟାବେଳେ ଆମେ ଶିକାର ଅଭିଯାନରେ ବାହାରି ପଡ଼ିଲୁ । ଡାକ୍ତରବାବୁଙ୍କ କାନ୍ଧରେ ବନ୍ଧୁକ, ହାତରେ ଟର୍ଚ୍ଚ । ମୋ ହାତରେ ଗରମ ଚା ଫ୍ଲାସ୍କ, ପାଣି ବୋତଲ, ରୁଟି ତରକାରି ଥିବା ଟିଫିନକ୍ୟାରିଅର ।

ଗ୍ରାମର ସେ ଲୋକଟି ଆଗେଆଗେ ବାଟ କଢ଼ାଇ ନେଉଥାଏ ।

ଜଙ୍ଗଲର ଶେଷ ସୀମାରେ ବଣ ପଦରଟି କୁଡ଼ିଆ ଘର—ଶବର ପଲ୍ଲୀ । ଗାଁ ମୁଣ୍ଡ ଘରୁ ବାଘ ବଳଦକୁ ଟାଣି ନେଇଛି । ବୋଧହୁଏ ରାତି ପାହିଗଲା; ଲୋକମାନେ କୋଳାହଳ କଲେ । ବଣ ଭିତରକୁ ଘୋଷାରି ନେଇଯିବାକୁ ସମୟ ପାଇଲା ନାହିଁ । ପ୍ରାୟ ପଦର ହାତ ଦୂରରେ ଛାଡ଼ିଦେଇ ପଳାଇଯାଇଛି । ରାତିରେ ମାଂସ ଖାଇବାକୁ ନିଶ୍ଚୟ ସେଠାକୁ ଆସିବ ।

ଲୋକଟି ତା ପିଲାପିଲିଙ୍କୁ ଗ୍ରାମର ଆଉ ଜଣଙ୍କ ଘରକୁ ପଠାଇ ଦେଲା । ବାହାର ପଟରେ ତା ଧୁସୁରି ରହୁଥିବା ଘରଟି ଆମ ପାଇଁ ଛାଡ଼ି ଦେଲା ।

ଘରର କାନ୍ଥ ଝାଟିମାଟି, ପୁଣି ଅତି ପୁରୁଣା । ଜଣେ ବଳୁଆଲୋକ ଠେଲିଦେଲେ ତଳେ ପଡ଼ିଯିବ । ଦୁଆରମୁହଁରେ 'ବାଉଁଶ ତାଟିର କବାଟ ।

ଅନ୍ଧାର ହୋଇଗଲାରୁ ଆମେ ଘରଭିତରେ ପଶି ତାଟିକବାଟ ବନ୍ଦ କରିଦେଲୁ । ମଡ଼ା ପଡ଼ି ରହିଥିବା ଦିଗରେ କାନ୍ଥରେ ଗୋଟିଏ ଛୋଟ କଣା

କରିଗଲା । ସେହି କଣାରେ ବନ୍ଧୁକ ନଳୀ ପୂରାଇ ବାଘକୁ ଗୁଳି କରିବାକୁ ହେବ ।

ତା ପରେ ମନେ ପଡ଼ିଲା, ବାଘ ଦେଖାଯିବ କପରି ? ତେଣୁ ଶିକାରୀ ଓ ମୋ ମୁହଁ ସିଧା ଆଉ ଦୁଇଟି କଣା ହେଲା । ଠିକ୍ ଗୋଟିଏ ତ୍ରିଭୁଜର ତିନି କୋଣ ଭଳି । ଡାକ୍ତରବାବୁ ଗୁଳିଭରା ବନ୍ଧୁକ ନଳୀକୁ କଣାଭିତରେ ପୂରାଇ ଧୀରଭାବରେ ଠିଆ ହୋଇ ରହିଲେ । ଟିକିଏ ହଲଚଲ ହେଲେ ମହାବିପଦ । ବାଘ ଦେହରେ ଗୁଳି ନ ବାଜିଲେ କିମ୍ବା ବାଘ କେବଳ ଘାଇଲା ହେଲେ ଆମ ଦଶା କଅଣ ନ ହେବ ? ଆମେ ବାଘ କଣ ଶିକାର କରିବୁ, ବାଘ ଓଲଟି ଆମକୁ ଶିକାର କରି ଜଙ୍ଗଲଭିତରକୁ ଟାଣିନେବ ।

ମୋର କାମ ହେଲା, ବାଘ ଆସିବାଟା ଦେଖିବା । ମୋ ମୁହଁ ପାଖରେ ହୋଇଥିବା କଣାରେ ଏକଧ୍ୟାନରେ ମୁଁ ଚାହିଁରହିଲି । ମୋ କଣା ପାଖରେ ବାଘକୁ ଦେଖିଲାକ୍ଷଣି ଡାକ୍ତରବାବୁଙ୍କ ଦେହକୁ ଚିମୁଟି ଦେବି । ସେ ସଙ୍ଗେସଙ୍ଗେ ଗୁଳି ଫାଏର କରିବେ ।

ଘରଭିତରେ କଥାବାର୍ତ୍ତା ହେବା ତ ବନ୍ଦ, ଫୁସ୍‌ଫାସ ହେବା ବି ମନା । କାଶ, ଛିଙ୍କ ସବୁ ଜବତ କରି ରଖିବାକୁ ହେବ । ଏପରି କି ଜୋରରେ ନିଶ୍ୱାସ ନେଲେ ବିପଦ ।

ଘରଭିତରଟା ବଡ଼ ଦୁର୍ଗନ୍ଧ । ନାକ ଫାଟିଯାଉଛି । ଏଣେ ମଶା ଦାଉ ଅତି ପ୍ରବଳ । ପାଦତଳେ ଜନ୍ଦା, ପିମ୍ପୁଡ଼ି, ଜିଆ ଚାଲୁବାଲୁ । ସେମାନେ ଯେତେ ଅତ୍ୟାଚାର କଲେ ମଧ୍ୟ ସେମାନଙ୍କୁ କ୍ଷମା ଦେବାକୁ ହେବ ।

ମୋର ଛିଙ୍କ ପରେ ଛିଙ୍କ ଆସିଲା । ନାକ ଚପି ଧରି ବହୁ କଷ୍ଟରେ ତାହା ବନ୍ଦ କଲି ।

ଖାଇବାକୁ ସମୟ ନାହିଁ କି ସୁବିଧା ନାହିଁ । ଟିଫିନ୍ କ୍ୟାରିଅରରେ ରୁଟି ତରକାରି ରହିଅଛି ।

ଘଣ୍ଟାଏ, ଦୁଇ ଘଣ୍ଟା, ତିନି ଘଣ୍ଟା କଟିଗଲା । କେତେ ରାତି ଯେ ହେଲାଣି, ଜାଣିବାର ଉପାୟ ନାହିଁ । "ଷ୍ଟାଣ୍ଡ ଅପ୍ ଅନ୍ ଦି ବେଞ୍ଚ" ଭଳି ଆମେ ଠିଆ ହୋଇ ରହିଥାଉ ।

ଟର୍ଚ୍ଚ ଆଲୁଅ ନେଇଛୁ, କିନ୍ତୁ ଜାଳିବାର ଉପାୟ ନାହିଁ । କାଳେ ବାଘ ସୁରାକ୍ ପାଇଯିବ ।

ପଦାରେ କାଳୀମେଘ ଜହ୍ନ । ଗଛପତ୍ର ଭିତରର ଘୁପିଘୁପିକିଆ ଘାଇ ।

ପ୍ରାୟ ପାହାନ୍ତା ପହରକୁ ବାଘ ମହାରାଜ ଆସିଗଲେ । ଆଖି ଦୁଇଟା ନିଆଁ ହୁଳା ପରି ଚକ୍‌ଚକ୍ କରୁଛି । ମଡ଼ା ପାଖରେ ପହଞ୍ଚିଲାକ୍ଷଣି ମୁଁ ଡାକ୍ତରବାବୁଙ୍କ ବାହାକୁ ଚିମୁଟି ଦେଲି ।

ଡାକ୍ତରବାବୁ ମଧ୍ୟ ବାଘକୁ ଦେଖି ନେଇଥିଲେ । ଠିକ୍ ସେତିକି ବେଳକୁ ତାଙ୍କର ପୁରୁଣା ପେଟମରା ରୋଗ ବାହାରିପଡ଼ିଲା । ତାଙ୍କ ଇସାରାରେ ପାଖରେ ଥିବା ଶବରର ବୁଢ଼ାଟି ପଛରେ ଠିଆ ହୋଇ ଅଣ୍ଟା ପାଖରୁ ପେଟକୁ ଚିପି ଧଇଲା ।

ଡାକ୍ତରବାବୁ ସମୟ ନଷ୍ଟ ନ କରି ବନ୍ଧୁକର ଘୋଡ଼ା ଟିପିଦେଲେ । ଠୋ କରି ଶବ୍ଦ ହେବା ମାତ୍ରକେ, ତେଣୁ ଦଉଡ଼ୁଦ୍ ଶବ୍ଦଟାଏ ଭାସିଆସିଲା ।

କଳା ମେଘ ଜହ୍ନକୁ ଡାକିଦେଲା । ଆଉ କିଛି ଦେଖାଗଲା ନାହିଁ ।

ଡାକ୍ତରବାବୁଙ୍କ ଲକ୍ଷ୍ୟ ଏକଦମ୍ ଠିକ୍ । ଗୋଟାଏ ମାତ୍ର ଗୁଳିରେ ଏତେ ବଡ଼ ବାଘଟା ମରିଗଲା । ତଳେ ଦଡ଼ବୁଦ୍ କରି ପଡ଼ିଗଲା । ବଡ଼ ଭାଗ୍ୟର କଥା ।

ଆମେ ତିନ ଜଣ ଖୁସିରେ ନାଚଉଠିଲୁ । ରାତିସାରାକର ଯମଯନ୍ତ୍ରଣା ଭୁଲିଗଲୁ । ଟର୍ଚ୍ଚବତୀ ଜାଳି କିପରି ରାତି ପାହିବ ପଚାରି ହେବ—ଅପେକ୍ଷା କରି ରହିଲୁ ।

ବାଘଟା ଯେ ଅତି ବଡ଼—ଏହା ବିଷୟରେ ସିଦ୍ଧାନ୍ତ କରି ସାରିଥିଲୁ । ଅନ୍ତତଃ ଆଠ ହାତ ଲମ୍ବ ହେବ ମୁଣ୍ଡଠାରୁ ଲାଞ୍ଜ ଶେଷଯାଏ ।

ବାଘ ମରିଛି । ଏଣିକି କଥାବାର୍ତ୍ତା ହେଲେ ଭୟ ନାହିଁ ।

ଡାକ୍ତରବାବୁ କହିଲେ, "ମୁଁ ବହୁତ ଦିନୁ ଗୋଟାଏ ବାଘଛାଲ ଖୋଜୁଥିଲି । ତା ଉପରେ ବସି ଠାକୁରପୂଜା କରିବି । ଏତେ ଦିନେ ଠାକୁରେ ଦୟା କଲେ । ଛାଲଟା ମୁଁ ନେବି ।"

ମୋ ମନ ଫିକା ପଡ଼ିଗଲା । ତଥାପି କହିଲି, "ତା ହେଲେ ମୁଣ୍ଡଟା ମୋତେ ଦେବେ । ମୁଁ ଡ୍ରଇଂରୁମ କାନ୍ଥରେ ଲଗାଇବି । ଭିତରେ ଛୁଣ୍ଡା କନା, ଭୁଲା; ଆଖିରେ କାଚଗୋଲି । ଭାରି ସୁନ୍ଦର ଦିଶିବ ।" ସେ ଶବର ବୁଢ଼ାଟି ବା ବାଦ୍ ପଡ଼ନ୍ତା କାହିଁକି ? "ମୋତେ ତା ଚମଟା ଦେବ । ଆଜ ନାକ ଅଗର ନଖରୁ ଦୁଇ ଖିଅ । ପିଲାଙ୍କ ପାଇଁ ଭାରି ଦରକାର ।"

ପ୍ରଥମ କଥାରେ, ମଲା ବାଘକୁ ତଳେ ଶୁଆଇ ଫଟୋ ଉଠିବ । ତା ଉପରେ ପାଦ ରଖି, କାନ୍ଧରେ ବନ୍ଧୁକ ଧରି ଡାକ୍ତରବାବୁ ଠିଆ ହେବେ । ମୁଁ ଠିଆ ହେବି ମଝିରେ, ଲଞ୍ଜ ପାଖରେ ବୁଢ଼ା ଶଅର । ଏ ଫଟୋ ସମ୍ବାଦପତ୍ର ସବୁକୁ ପଠାଯିବ । ସେଥିରେ ପ୍ରକାଶ ପାଇଲେ ହଜାର ହଜାର ଲୋକ ଆମ ଚେହେରା ଦେଖିବେ । ଆମ ସାହସ, ବୀରତ୍ୱର ପ୍ରଶଂସା କରିବେ ।

ତେବେ ଫଟୋଗ୍ରାଫର ଏ ଅଞ୍ଚଳରେ ନାହାନ୍ତି । ଫୁଲବାଣୀ ସହରକୁ ନ ଗଲେ ନ ଚଳେ ।

ରାତି ପାହିଲା, ଫର୍ଚ୍ଚା ହେଲା । ଆମ ସଙ୍ଗରେ ଥିବା ଲୋକଟି ଯାଇ ଗ୍ରାମରେ ଖବର ଦେଲା । ବାଘ ମରିଛି ଶୁଣି ଗାଁ ଲୋକେ ଆନନ୍ଦରେ ଦଉଡ଼ି ଆସିଲେ । ବାଘକୁ ଲଦି ନେଇଯିବାପାଇଁ ଗୋଟାଏ ଶଗଡ଼ ଅଣାଗଲା । ଏ ସବୁ ଖର୍ଚ୍ଚ ପାଇଁ ମୁଁ ପକେଟରୁ ବାହାରକରି ଟଙ୍କା ଦେଲି ।

ଲୋକମାନେ ଆସି ଚାରିଆଡ଼େ ଧନ୍ଦ ପକାଇଲେ । ବଣ, ବୁଦା, ଖାଲ, ଢିପ—ବାଘ ପଡ଼ିଛି କେଉଁଠି ? ସେ ତ ନିଶ୍ଚୟ ମରିଛି । ତେବେ ଦେହଟା ଗଲା କୁଆଡ଼େ ? ବାଘକୁ ନ ନେଇ ଆମେ ତ ସେ ସ୍ଥାନ ଛାଡ଼ିପାରିବୁ ନାହିଁ ।

ଏତେ ବଡ଼ ବିଜୟ ! କାହା ମନ ବା କୁଣ୍ଠିତ ନ ଉଠିବ ? ବାଘ ଦେଖାଇଲେ ସିନା ସରକାରରୁ ପୁରସ୍କାର ମିଳିବ । ବେଶୀ ନ ହେଉ, ଶହେ ଟଙ୍କା ତ ଅନ୍ତତଃ ଲାଭ ହେବ । ସେଥିରୁ ଶଅର ବୁଢ଼ାକୁ କୋଡ଼ିଏ ଟଙ୍କା ନିଶ୍ଚୟ ଦିଆଯିବ ।

କ୍ରମେ ସକାଳ ଯାଇ ଖରାବେଳ ହେଲା । ବାଘର ପତ୍ତା ମିଳିଲା ନାହିଁ ।

ମଡ଼ା ପଡ଼ିଥିବା ସ୍ଥାନର ଅଳ୍ପ ଦୂରରେ ଗୋଟାଏ ଖାଲ । ସେଥିରେ ଗୁଡ଼ାଏ ଶୁଖିଲା ପତର କେଉଁକାଳୁ ଜମି ରହିଥାଏ । ବାଘ ଗୁଳିଖାଇ ସେ ଖାଲଭିତରେ ଗଳିପଡ଼ିଥିବ । ତେଣୁ ଦୁଇଜଣ ଲୋକ ତା ଭିତରେ ପଶିଲେ । ଶୁଖିଲା ପତରକୁ ଖେଳାଇ ପକାଇଲେ । ତଳେ ଗୁଡ଼ାଏ ଭଙ୍ଗା ହାଣ୍ଡିର ଖପରା । ତାହାରି ଭିତରୁ ଆମ ବନ୍ଧୁକ ଗୁଳିରେ ପ୍ରାଣ ହରାଇଥିବା ଶିକାର ବାହାରିପଡ଼ିଲା ।

ତହା ଆଠ ହାତ ଲମ୍ବର ବାଘ ନୁହେଁ; ମୁଠାଏ ଲମ୍ବା ହେବ ଗୋଟାଏ କଣ୍ଟାସ—ବଣବିରାଡ଼ି ।

———

# ଭାଇ ପରି ବନ୍ଧୁ କେହି ନାହିଁ

ଗେହ୍ଲଟା ପୁଅ ନାଁ ପଦ୍ମଚରଣ । ଯେ ଶୁଣିବ, ସେ ହସିବ ।

ସେହିପରି ବଣୀକଙ୍କର ନାଁ ସିନା ଦିଆଯାଇଛି, ମାତ୍ର ସେ ଆଦୌ ବାଣୀର କଙ୍କର ନୁହେ । ସବୁବେଳେ ସମସ୍ତଙ୍କୁ କଡ଼ାକଡ଼ା କଥା କହେ । ଖେକ୍‌ଠୋକ୍ ଜବାବ । ଯେ ଶୁଣେ ସେ ବିରକ୍ତ ହୁଏ । ଚିଡ଼ି ଉଠେ ।

ତା ସାଙ୍ଗକୁ ମିଳିଛି ସାନ ଭାଇ ସତ୍ୟଜଙ୍କର । ସେ କେବେ ହେଲେ ସତ୍ୟର ସାଖ ପଣି ନାହିଁ । ସବୁବେଳେ ତାର ମିଛ କାରବାର । କୂଟକପଟ । ଅନ୍ୟର କ୍ଷତି କରିବା, ଅନ୍ୟକୁ ବିପଦରେ ପକାଇବା ତାର ସ୍ୱଭାବ ।

ନିପଟ ମଫସଲ ଗ୍ରାମର ଭାଇ ଦୁଇଟି । ବାପା ଜଣେ କୃଷୀ । ବର୍ଷସାରା କୃଷି କାମ କରି ସୁଖେଦୁଃଖେ ଚଳିଯାଆନ୍ତି । ପିଲା ଦୁହିଁଙ୍କୁ ପାଠ ପଢ଼ାଇବା ତାଙ୍କର ଭାରି ଇଚ୍ଛା । ତେଣୁ ସେମାନଙ୍କୁ ସ୍କୁଲକୁ ପଠାନ୍ତି । ସଫା ଲୁଗା ଜାମା ଯୋଗାନ୍ତି । ସ୍କୁଲ ଦରମା, ବହି ଖାତା ଓ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ମୁକ୍ତହସ୍ତରେ ଟଙ୍କା ଦିଅନ୍ତି । କୌଣସି କଥାକୁ ସେ କୁଣ୍ଠିତ ହୁଅନ୍ତି ନାହିଁ ।

ମାତ୍ର ଦଇବ ଏହା ସହିଲା ନାହିଁ । ବାପା ଅଳ୍ପ ବୟସରେ ମରିଗଲେ । ସେତେବେଳକୁ ବାଣୀର ବୟସ ମାତ୍ର ଚଉଦ ବରଷ ! ଆଉ ସତ୍ୟ ତ ମୋଟେ ବାରବର୍ଷର ପିଲା ।

ବାଣୀ ହାଇସ୍କୁଲରେ ପଢ଼ୁଥିଲା । ତାର ପାଠପଢ଼ା ବନ୍ଦ ହେଲା । ସେ ଯଦି ସ୍କୁଲକୁ ଯିବ, କୃଷିକାମ ଦେଖିବ କିଏ ? ଘର ଚଳାଇବ କିଏ ? ଯା ହେଉ, ତାହାର କିଛି ଜ୍ଞାନ ହୋଇଯାଇଛି । ହିସାବପତ୍ର ଭଲ ଜାଣିଛି; ପାଞ୍ଚଜଣଙ୍କ ଆଗରେ ପାଞ୍ଚ କଥା କହିବାର ବୁଦ୍ଧି ହାସଲ କରିଛି ।

ସେ ଭାବିଲା, "ମୁଁ କୃଷି କାମରେ ଲାଗିବି, ଘର କଥା ବୁଝିବି । ସତ୍ୟ ପାଠ ପଢ଼ୁ । ବାପାଙ୍କ କଥା ରହିବ । ବାପା ସ୍ୱର୍ଗରେ ଥାଇ ଖୁସି ହେବେ । ଆମ ଘରର ନାଁ ବି ପଡ଼ିବ ।

ମାଆଙ୍କ ଆଗରେ ଏଇ କଥା ପଡ଼ିଲା । ଅନ୍ୟ ଉପାୟ ନ ଥିଲା । ମା ବାଧ୍ୟ ହୋଇ ରାଜି ହେଲେ ।

ବାଣୀ ସ୍କୁଲକୁ ଯିବା ବନ୍ଦ କରିଦେଲା । ତାର ପାଠ ପଢ଼ାରେ ଡୋରି ବନ୍ଧା ହେଲା । ବଳଦକୁ ହଳ ଧରି ଯିବା, ବିହନ ବୁଣିବା, ଫସଲ ଅମଳ କରିବା ହେଲା ତାର ପ୍ରତିଦିନର କାମ ।

ସାନ ଭାଇ ସତ୍ୟ ଏ ସବୁ କାମର ଧାର ଧାରେ ନାହିଁ । ସେ ପ୍ରତିଦିନ ସ୍କୁଲକୁ ଯାଏ, ଲେଖାପଢ଼ା କରେ । ସାଙ୍ଗସାଥୀଙ୍କ ସହିତ ବୁଲେ, ଖେଳେ, ଦୂର ଗ୍ରାମମାନଙ୍କୁ ଯାତ୍ରା ତାମସା ଦେଖିବାକୁ ଚାଲିଯାଏ ।

ସେ ବାପାଙ୍କୁ ଟିକିଏ ଡରୁଥିଲା । ବାପା ଯାହା କହୁଥିଲେ, ତା'ହା ଶୁଣୁଥିଲା; କଥା ମାନି ଚଳୁଥିଲା ।

ଭାଇ ତାକୁ ଅତି ବେଶି ସ୍ନେହ କରନ୍ତି । ପଦେ କଡ଼ା କଥା କହିପାରନ୍ତି ନାହିଁ । ତେଣୁ ସେ ଭାଇଙ୍କୁ ମୋଟେ ଖାତିର କରେ ନାହିଁ । ଭାଇ ଗୋଟାଏ କିଛି କାମ ବତାଇଲେ, ମୁହଁ ବୁଲାଇ ଚାଲିଯାଏ । ଆଦୌ ଶୁଣେ ନାହିଁ ।

ଭାଇ ଦିନରାତି କାମରେ ଲାଗି ରହିଥାଆନ୍ତି । ସତ୍ୟର ପାଠପଢ଼ା ଦେଖିବାକୁ ତାଙ୍କର ସମୟ କାହିଁ ? ଯେତେବେଳେ ସତ୍ୟ ପଇସା ମାଗେ, ତାହା ଯେ କୌଣସିମତେ ସଂଗ୍ରହ କରି ଦେଇଦିଅନ୍ତି । ଘରେ ଯେ ପଇସା ନାହିଁ—ଏହା ସତ୍ୟକୁ ଜାଣିବାକୁ ଦିଅନ୍ତି ନାହିଁ ।

ଉପରେ କଟକଣା ନ ଥିବାରୁ ସତ୍ୟ କ୍ରମେ ଖରାପ ହୋଇଗଲା । ଗୁଡ଼ିଏ ମନ୍ଦ ପିଲାଙ୍କର ସାଙ୍ଗ ହେଲା । ଆଉ ସ୍କୁଲକୁ ଯାଏ ନାହିଁ । ସେହି ଖରାପ ପିଲାଙ୍କ ସହିତ ମିଶି ଏଣେତେଣେ ବୁଲେ । ସମସ୍ତେ ଏକାଠି ହୋଇ କାହା ବାଡ଼ିରୁ ନଡ଼ିଆ, ଆମ୍ବ, କଦଳୀ ଚୋରାଇ ଆଣନ୍ତି । ସେଥିରେ ଗାଁ ମୁଣ୍ଡ ତୋଟାରେ ବଣଭୋଜି ହୁଏ; ଖେଳ କଉତୁକ ଲାଗେ ।

ଏଇ ସବୁ କାମରେ ମାତି ସତ୍ୟ ପରୀକ୍ଷାରେ ଫେଲ ହେଲା । ଶିକ୍ଷକମାନେ ତାକୁ ଗାଳିଦେଲେ । ସହପାଠୀମାନେ ଛି ଛି କଲେ । ତେଣୁ ସେ ଆଉ ସ୍କୁଲକୁ ଗଲା ନାହିଁ । ପଢ଼ା ବହିତକ ବିକିଦେଇ ସେହି ପଇସାରେ ମଉଜ ମଜଲିସ କଲା ।

କଥାଟା ବେଶି ଦିନ ଲୁଚି ରହିଲା ନାହିଁ । ଘରେ ଭାଇ ଜାଣିଲେ; ମା ଶୁଣିଲେ । ତା ଉପରେ ବିରକ୍ତ ହେଲେ । ମାତ୍ର ସତ୍ୟର ସେଥିପ୍ରତି ଖାତିର ନ ଥାଏ ।

ଭାଇ କହିଲେ,—ତୁ ଆମ ବଂଶର କୁଳାଙ୍ଗାର । ବାପା ଭାବିଥିଲେ, ତୁ ପାଠ ପଢ଼ିବୁ, ମଣିଷ ହେବୁ । ଆମ ଘରର ଖ୍ୟାତି ବଢ଼ିବ । କିନ୍ତୁ ତୁ ହେଉଛୁ ତାର ଓଲଟା ।

ଏଇ କଥାରେ ସତ୍ୟ ରାଗିଗଲା । କହିଲା; "ନାଁ, ମୁଁ ତୁମ ପାଖରେ ରହିବି ନାହିଁ । ମୋ ଜମି ଘର ଅଲଗା କରି ଦିଅ, ମୁଁ ଭିନେ ହେବି । ଯେତେ ଭାଇ ସେତେ ଘର । ତୁମେ ମୋତେ କୁଳାଙ୍ଗାର କହିଲ । ତୁମସହିତ ଆଉ ସମ୍ପର୍କ କଅଣ ?"

ମା ଆସି ବହୁତ ବୁଝାଇଲେ । ଭାଇ ମଧ୍ୟ ସାନ୍ତ୍ୱନା ଦେଲେ । ସାହିର ବୁଢ଼ାବୁଢ଼ୀ ମୁରବୀମାନେ କେତେ ଆଶ୍ୱାସନା ଦେଲେ । କୌଣସି କଥାରେ ସତ୍ୟ ମାନିଲା ନାହିଁ । ନିଜ ଜିଦ୍‌ରେ ଅଟଳ ରହିଲା । "ମୁଁ ଭିନେ ହେବି । ମୋ ଇଚ୍ଛା ଯାହା ତାହା କରିବି ।"

ସେ ଏତେ ଜିଦ୍ କରି ନ ଥାନ୍ତା । ତାଙ୍କ ସାଙ୍ଗ ସାଥିମାନେ ତାକୁ ବଳ ଦେଲେ । ଚିହାଇଲେ । ତାଙ୍କର କଥା ମାନି ସେ ଭାଇଠାରୁ ଅଲଗା ହୋଇଗଲା । ସେହିମାନଙ୍କ ସହିତ ମିଶି ମଉଜ ମଜଲିସ କଲା ।

ଯାହା ଧନ ପାଇଥିଲା, ସବୁ ଶେଷ ହୋଇଗଲା । ଭାଇ ଯେତେ ମନା କଲେ ମଧ୍ୟ ଶୁଣିଲା ନାହିଁ । ନିଜ ଭାଗ ଜମି ବିକିଦେଲା । ସେହି ପଇସାରେ ପୁଣି ବନ୍ଧୁମାନଙ୍କୁ ଚର୍ଚ୍ଚା କଲା । ସେ ଭାବିଲା, ଏଇମାନେ ହିଁ ମୋର ସବୁ । ମୋତେ ଆପଦ ବିପଦରେ ସାହାଯ୍ୟ କରିବେ । ଭାଇଟା ବଡ଼ ଶତ୍ରୁ, ଭଗାରି ।

ରୋଜଗାର କିଛି ନାହିଁ । ଖର୍ଚ୍ଚ ଚାଲିଛି । କଥାରେ ତ ଅଛି, ବସି ଖାଇଲେ ନଈବାଲି ସରେ । ତାର ସବୁ ପଇସା ସରିଗଲା । କଅଣ କରିବ ?

ସବୁ ସାଙ୍ଗ ମିଶି ଠିକ୍ କଲେ, ଅନ୍ୟ ଘରୁ ଚୋରି କରିବା । ଆମ ଖର୍ଚ୍ଚ ତୁଲାଇବା ।

ସତ୍ୟ ହେଲା ସେମାନଙ୍କ ନେତା । ପ୍ରଥମେ ପ୍ରଥମେ ବାଡ଼ି ଭିତରୁ ନଡ଼ିଆ, କଦଳୀ ଚୋରି କରୁଥିଲେ । କ୍ରମେ ସାହସ ବଢ଼ିଗଲା । ଘର

ଭିତରେ ପଶି ଟଙ୍କା ପଇସା, ସୁନା ରୁପା ଚୋରି କଲେ । ଗାଁସାରା ହୁଲସ୍ଥୁଲ ପଡ଼ିଗଲା ।

ଚୋର ଘର ସବୁ ଦିନ ଅନ୍ଧାର ନ ଥାଏ ।

ଦିନେ ଚୋରଦଳ ଧରା ପଡ଼ିଲେ । ଗ୍ରାମକୁ ପୁଲିସ ଆସିଲେ । ସବୁ ପ୍ରମାଣ ପାଇ ସତ୍ୟକୁ ବାନ୍ଧି ନେଇଗଲେ ।

ଏ ଖବର ପାଇ ବନ୍ଧୁମାନେ ଲୁଚିଲେ । ତାକୁ ସାହାପକ୍ଷ ହେବା ପାଇଁ କେହି ଜଣେହେଲେ ଆସିଲେ ନାହିଁ ।

“ସମ୍ପଦ କାଳେ ସର୍ବେ ସଖା,
ବିପଦେ ନ ଦିଅନ୍ତି ଦେଖା ।”

ସତ୍ୟର ଟଙ୍କାକଉଡ଼ି ଥିଲା । ସେଥି ଲୋଭରେ ବହୁତ ବନ୍ଧୁ, ସାଙ୍ଗ ସାଥୀ ତାକୁ ସବୁବେଳେ ଘେରି ରହୁଥିଲେ । ଧନ ସରିଗଲା । ଆଜି ତ କିଛୁ ପାଇବାର ଆଶା ନାହିଁ । ଆସିବେ କାହିଁକି ?

ପୁଲିସ ସତ୍ୟକୁ ହାଜତକୁ ପଠାଇଦେଲେ । ସେଠାରେ ରହି ସେ ଆଗ କଥା ଝୁରି ହେଲା । କେତେ ବନ୍ଧୁଙ୍କ ପାଖକୁ ଖବର ଦେଲା; ନେହୁରା ହେଲା । କିନ୍ତୁ କାହାରି ଦେଖା ମିଳିଲା ନାହିଁ ।

ଶେଷରେ ଦେଖା ମିଳିଲା ଭାଇଙ୍କର । ସେ ଆସି ସତ୍ୟକୁ ଜାମିନରେ ଖଲାସ କରି ନେଲେ । ଓକିଲ ଦେଇ ମକଦ୍ଦମା ଲଢ଼ିଲେ । ବହୁତ ପଇସା ଖର୍ଚ୍ଚ କଲେ ।

ମକଦ୍ଦମାରେ ସତ୍ୟ ଖଲାସ ହୋଇଗଲା । ସେତେବେଳକୁ ମନରେ ଚେତା ପଶିଥାଏ । ଭାଇଙ୍କ ଗୋଡ଼ତଳେ ପଡ଼ି କହିଲା, “ଭାଇ ମୋତେ କ୍ଷମା କର । ପ୍ରକୃତରେ ମୁଁ କୁଳାଙ୍ଗାର । ତୁମକୁ ଚିହ୍ନି ପାରି ନ ଥିଲି । ଏବେ ଜାଣିଲି ।”

ତାର ବୟସ ହୋଇ ଯାଇଥିଲା । ତଥାପି ଭାଇ ତାକୁ ସ୍କୁଲକୁ ପଠାଇଲେ । ଏଣିକି ସେ ମନ ଦେଇ ପାଠ ପଢ଼ିଲା । ଭାଇଙ୍କ କଥାରୁ ଆଉ କେବେ ଟଳିଲା ନାହିଁ ।



# ଭୂତାଭୂତ

ଆଚ୍ଛା ପିଲାଏ, ଭୂତାଭୂତ ମାନେ କ'ଣ ଜାଣିଛ ? ଜାଣି ନାହଁ କି ? ସେଥିପାଇଁ ଦୁଃଖ କରିବାର କିଛି ନାହିଁ । ମୁଁ ବି ଜାଣି ନାହିଁ । ଅବଶ୍ୟ ଶ୍ରେଣୀରେ ଭର୍ତ୍ତିକୁଲର ସାରଙ୍କୁ ପଚାରିଲେ, ସେ ଗୋଟାଏ କିଛି ଅର୍ଥ କହିଦେଇ ପାରନ୍ତି । ତେବେ କଥାଟା ଯେତେବେଳେ ସତ, ସେତେବେଳେ ଅର୍ଥ ନ ଜାଣିଲେ ବି କିଛି ଯାଏଆସେ ନାହିଁ ।

ଆମ ଗାଁ ଶେଷ ମୁଣ୍ଡର ଅନେକ ଦୂରରେ ହାଣ୍ଡିବଅା ଛକ ।

ଗ୍ରାମର କେହି ମରିଗଲେ, ଏଗାର ଦିନଯାଏ ସରୁ ଘିଅ, ଡାଲି, ତରକାରି ହାଣ୍ଡି ରାତିରେ ସେ ଛକରେ ଦିଆଯାଏ—ମୃତବ୍ୟକ୍ତି ଆସି ଖାଇବ ବୋଲି । ଏଗାର ଦିନଯାଏ ସେ ପ୍ରେତ ଥାଏ—ସେ ପର୍ଯ୍ୟନ୍ତ ତାକୁ ଲୋକଶୋଷ ଗୁଡ଼ ନ ଥାଏ । ତା ପରେ ସେ ଚାଲିଯାଏ ଆଉ ପୁରକୁ । ତେଣିକି ବର୍ଷକେ ଥରେ ଖାଇବାକୁ ଦେଲେ ଚଳିବ ।

ପ୍ରେତ ଖାଉ ନ ଖାଉ, ବିଲୁଆ, କୁକୁର, ଗଧିଆ ବାଘଯାକ ସେଠାରେ ପଲପଲ ବୁଲନ୍ତି । ସେମାନଙ୍କ ଭିତରେ କାମୁଡ଼ାକାମୁଡ଼ି ଲାଗେ । ସେ ଶବ୍ଦରେ ଗାଁ ଚମକିଉଠେ । ସମସ୍ତେ ଭାବନ୍ତି, ଭୂତ ପ୍ରେତ କଳି ଲଗାଇଅଛନ୍ତି ।

ବହୁ ଦିନର ପୁରୁଣା ବରଗଛ । ଡାଳ ଓ ଓହଳ ଲମ୍ବିଯାଇଛି ଅନେକ ଦୂରଯାଏ । ଗଛରେ ଚିଲ, ଶାଗୁଣା, କୁଆ, କୋଇଲି—ଏମିତି ନାନା ଜାତିର ଚଢ଼େଇ ଘର କରି ରହିଅଛନ୍ତି ବାପ ଅଜା ଚଉଦ ପୁରୁଷରୁ । ସେମାନେ ତ ମଣିଷ ନୁହନ୍ତି । ତେଣୁ ସେମାନଙ୍କ ଭିତରେ କଳିଗୋଳ; ମରାମରି ବା କାମୁଡ଼ାକାମୁଡ଼ି ଲାଗେ ନାହିଁ । ଯେ ଯାହା ଘରେ ପିଲାକବିଲା ଧରି ସୁଖରେ କାଳ କାଟନ୍ତି । ସକାଳ ହେଲେ ଧଡ଼ପଡ଼ ହୋଇ ଉଠନ୍ତି । ଡାକହାକ କରି ଅନ୍ୟକୁ ଉଠାନ୍ତି । ଚାଲିଯାଆନ୍ତି ନିଜ ନିଜ କାମରେ । ପୁଣି ଫେରିଆସନ୍ତି ରାତିକୁ । ସେତେବେଳେ ଡେଣା ଝାଡ଼, ଫଡ଼ଫାଡ଼ ହୋଇ, କେଁ କଟର ବୋବାଇ ସେ ଅଞ୍ଚଳ କମ୍ପାଇ ଦିଅନ୍ତି ।

ଏକା ଆମ ଗାଁ କୁହେଁ, ଆଖପାଖ ଦଶ ଖଣ୍ଡ ଗ୍ରାମର ଲୋକେ ଜାଣନ୍ତି, ତାହା ଗୋଟାଏ ଭୟଙ୍କର ସ୍ଥାନ । ଭୂତ, ପ୍ରେତ, ଡାଆଣୀ, ଚିରୁଗୁଣୀ, ବ୍ରହ୍ମରାକ୍ଷସଙ୍କ ଆଡ୍ଡା । ସେ ସମସ୍ତେ ସେ ଗଛର ଡାଳମାନଙ୍କରେ ବସା ବାନ୍ଧି ରହିଅଛନ୍ତି । ରାତି ତ ରାତି, ଦିନବେଳା ମଧ୍ୟ ବିଶେଷତଃ ଦି'ପହର ଖରାବେଳେ ସେଠାକୁ ଲୋକେ ଯିବାକୁ ଡରନ୍ତି । ଯିବା କଥା ପଡ଼ିଲେ ଛାତି ଥରିଉଠେ ।

ବୁଢ଼ାବୁଢ଼ାମାନେ କହନ୍ତି, ହାବୁଡ଼ରେ ପଡ଼ିଲେ, ଭୂତ, ପ୍ରେତ, ଡାଆଣୀ ସବୁ ଗଛରୁ ଓହ୍ଲାଇ ଆସନ୍ତି । ଲୋକଙ୍କ ବେକରେ ବସି ସେମାନଙ୍କ ରକ୍ତ ଶୋଷିନିଅନ୍ତି । କମ୍ବା ବୁଲାଇ ଭୁଲେଇ ଶ୍ମଶାନକୁ ନେଇଯାଆନ୍ତି, ସେଠାରେ ବେକ ମୋଡ଼ି ଖାଇବାପାଇଁ ।

ସେ ବରଗଛମୂଳ କଥା ଶୁଣିଲେ ତ ପିଲାଙ୍କ ପିଳେହି ପାଣି ହୋଇଯାଏ । ସବୁ ପ୍ରକାର ଜଟଟପଣିଆ ଛାଡ଼ି ଚୁପ୍‌ଚାପ ଦୁଧ ପିଇ ଦିଅନ୍ତି ବା ମୁହଁ ମାଡ଼ି ଶୋଇପଡ଼ନ୍ତି ।

ବର୍ଷା ଦିନର ଅମାବାସ୍ୟା—ଘୋର ଅନ୍ଧାର ରାତି । ପୁଣି ଫନାନ୍ତି, ଶନିବାର । ଠିକ୍ କାଳବେଳା ।

ଠିକ୍ ସେତିକବେଳେ ଦୁଇ ଜଣ ଅପରିଚିତ ଲୋକଙ୍କର ସେଠାରେ ଭେଟ ହୋଇଗଲା । ଦୁହେଁଯାକ ଦୂର ବିଦେଶୀ ।

ମନେକର ସେମାନଙ୍କ ନାମ ମହେଶ ଓ ଗଣେଶ ।

ମହେଶ ଆସୁଛି ପାଞ୍ଚକୋଶ ଦୂର ତା ଗ୍ରାମରୁ । ଯିବ ଶ୍ୱଶୁରଘରକୁ । କାନ୍ଧରେ ଗଇତା ଅଛି, ପିନ୍ଧିଛି ଧୋବ ଲୁଗା, ଦେହରେ ଚାଦର ।

ଗଣେଶର କିନ୍ତୁ ଫିଟ୍‌ଫାଟ୍ ପୋଷାକ । ଟେରିଲିନ୍ ସାର୍ଟ ପ୍ୟାଣ୍ଟ, ଗୋଡ଼ରେ ଚପଲ । ହାତରେ ଗୋଟାଏ ବ୍ୟାଗ ।

ସେ ଆସୁଛି ବହୁତ ଦୂରରୁ; ଯିବ ବି ଅନେକ ବାଟ । ଏ ଅଞ୍ଚଳ ସମ୍ପୂର୍ଣ୍ଣ ଅପରିଚିତ । ଘରୁ ବାହାରିଲାବେଳେ ବନ୍ଧୁମାନେ କହିଥିଲେ, ପକାରାସ୍ତା ଦେଇ ଗଲେ ବେଶି ବାଟ ବୁଲିବାକୁ ପଡ଼ିବ । ତେଣୁ ଏହି ବିଲ ରାସ୍ତାରେ ଯିବା ଉଚିତ ।

ଅନ୍ଧାର ହୋଇ ଆସିଲାଣି । ଗଛମୂଳଟା ପୁଣି କଟିକଟି ଅନ୍ଧାର । ଗଣେଶ ଠିଆ ହୋଇ ଭାବୁଛି, କୁଆଡ଼େ ଯିବ ? ଦେଖିଲା ଆଗରେ ଜଣେ ଲୋକ ଠିଆ—ସେ ମହେଶ ।

ମହେଶ ଗଣେଶକୁ ଦେଖି ଚମକିଉଠିଲା । ତା ଛାତି ଥରିଗଲା । ଝୁଡ଼ିର ଭିତରେ ହାତ ପୂରାଇ ପଇତାକୁ ଧରି ରାମରାମ ତିନି ଥର ଜପି ପକାଇଲା ।

ଗଣେଶ ପଚାରିଲା, "ଭାଇ, ମଧୁପୁରକୁ କେଉଁ ବାଟେ ଯିବ ?"

"ଏଇ ଗୋଟାଏ ତ ବାଟ ପଡ଼ିଛି ବଲ ଭିତରେ"—ମହେଶ ତରତର କରି ଉତ୍ତର ଦେଲା ।

ଏହି ସମୟରେ ଗଛ ଉପରେ ଫଡ଼ଫାଡ଼ ଶବ୍ଦ ହେଲା । ମହେଶ ପ୍ରାଣବିକଳରେ ସେଠାରୁ ବଲମଝିକୁ ଦଉଡ଼ିଗଲା ।

ଗଣେଶ କିଛି ବୁଝି ନ ପାରି ମଧ୍ୟ ତା ପଛରେ ଧାଇଁଗଲା । କାରଣ ପଚାରିବାରୁ ମହେଶ କହିଲା, "ସେ ଗଛରେ ବହୁତ ଭୂତପ୍ରେତ ଅଛନ୍ତି ପରା ! ଜୀଅନ୍ତା ମଣିଷକୁ ଖାଇଯାଆନ୍ତି ।"

ଗଣେଶର ମନ ଦବିଗଲା । ସେ ଅନୁନୟ ହୋଇ କହିଲା, "ମୁଁ ତୁମ ସାଙ୍ଗରେ ଯିବି । ଏକାଠି ଦୁଇ ଜଣ ଗଲେ, ଆଉ ଡରଭୟ ରହିବ ନାହିଁ ।"

ମହେଶ 'ହଁ' କହିଲା ସତ; ମାତ୍ର ତରତର ହୋଇ ପାଦ ପକାଇ ଚାଲି ଯାଉଥାଏ—ଯେପରି କି ଗଣେଶ ପାଖକୁ ଲାଗି ନ ଆସେ ।

କି ବୁଦ୍ଧି ଯୋଗିଲା କେଜାଣି, ଆଗକୁ ଚାଲୁଚାଲୁ ପଚାରିଦେଲା, "ତୁମ ନାଁ କଅଣ ?"

"ଗଣେଶ ।"

ଏହା ଶୁଣିବାକ୍ଷଣି ମହେଶ ମନରେ ପୁରୁଣା କଥା ଖେଳିଗଲା । ତା ଘରେ ବହୁତ ଦିନ ତଳେ ଗୋଟିଏ ହଳିଆ ଚାକର ଥିଲା । ତା ନାମ ଗଣେଶା । ଠିକ୍ ରୂପେ ମଜୁରି ଦେଲା ନାହିଁ ବୋଲି ମହେଶ ଉପରେ ତାର ବଡ଼ ରାଗ । ବରାବର ଗରଗରୁ ହେଉଥାଏ । ଶେଷକୁ ତା ଘର ଛାଡ଼ି ଚାଲିଗଲା । ଏବେ ହଇଜାରେ ପଡ଼ି ମରିଯାଇଅଛି ।

ମହେଶ ଭାବିଲା, "ଏ ସେହି ଗଣେଶା । କହୁଛି କଅଣ ନା, ଗଣେଶ—ଭଲଲୋକ ସାଜିଛି । ପୁଙ୍ଗର ଗଗ ଶୁଖାଇବ । ମୋ ରକ୍ତ ପିଇବ । ସେଇଥିପାଇଁ ଭୂତ ହୋଇ ଏଠାରେ ଠିଆ ହୋଇ ରହିଥିଲା । ଭୂତ ନୁହେଁ ତା' ଭୂତା । ଗଣେଶା ଯେତେବେଳେ, ଭୂତା ନିଶ୍ଚୟ ହେବ ।"

ଏତିକିବେଳେ ଆକାଶରେ ବିଜୁଳି ଝଟକିଉଠିଲା । ମହେଶ ଚାହିଁଦେଲା । ଦେଖିଲା, ସେହି ହଳଥା ଗଣେଶା ପରି ଲମ୍ବା ମୁହଁ, ନାକଟା ଠିଆ ହୋଇ ରହିଅଛି । ଆଖି ଦୁଇଟା ଚକ୍‌ଚକ୍ କରୁଛି ଭୂତ ଆଖି ପରି । କେବଳ ପୋଷାକରେ ଯାହା ଫରକ । ସେ ପିନ୍ଧିଥିଲା କେବଳ ଚିରା ଲୁଗା, କାନ୍ଧରେ ଗାମୁଛା । ଏ ପିନ୍ଧିଛି ପ୍ୟାଣ୍ଟ ଜାମା । ନିଶ୍ଚୟ ତାକୁ ଭୁଲାଇବା ପାଇଁ ଏ ବେଶ ।

ସେ ଖୁବ୍ ଜୋରରେ ଦଉଡ଼ିବାକୁ ଲାଗିଲା ।

ପାଣି କାଦୁଅ—ଧାନକିଆରୀ ମଝି । ଗଣେଶ ହିସାବ ରଖିପାରୁ ନ ଥାଏ । ସେ ବହୁତ ଦୂରରେ ପଡ଼ିରହିଲା ।

ତା ମନରେ ଖେଳିଗଲା, "ଅନ୍ଧାର ରାତି, ପାଣି କାଦୁଅ ଚକଟି ମଣିଷ କଅଣ ଏତେ ବେଗରେ ଧାଇଁପାରେ ? ଏ ମଣିଷ ନୁହେଁ ନିଶ୍ଚୟ ଭୂତ । ଗଛରୁ ଓହ୍ଲାଇ ଆସିଛି ମୋତେ ଖାଇବ ବୋଲି । ତା ପଛେ ପଛେ ଗଲେ ମୋତେ ମଶାଣିକୁ ନେଇଯିବ—ସେଇଁଠାରେ ବେକ ମୋଡ଼ି ରକ୍ତ ପିଇବ ।"

ଏହା ଭାବିଲାକ୍ଷଣି ସେ ଜୀବନକୁ ପାଣି ଛଡ଼ାଇଦେଲା । "ମାଆଲୋ ଭୂତ ଖାଇଗଲା" କହି ହଳ ମଝିରେ ଅନ୍ୟ ବାଟରେ ଦଉଡ଼ିଲା ।

ଗ୍ରାମ ମୁଣ୍ଡରେ ଅଷ୍ଟପ୍ରହରୀ ସଂକୀର୍ତ୍ତନ ହେଉଥାଏ । ବହୁ ଲୋକ ଜୁଣ୍ଡ ହୋଇ ଖୋଳ, କରତାଳ ବଜାଉଥାଆନ୍ତି । ଦୁଇ ତିନୋଟି ମଶାଲ ଜଳି ଚାରିଆଡ଼ ଆଲୋକିତ ।

ଲୋକେ ଦେଖିଲେ, ଜଣେ କେହି ଦଉଡ଼ି ଦଉଡ଼ି ଆସି ସେଠାରେ ପଡ଼ିଗଲା । ଖନେଇ ଖନେଇ 'ଭୂତା ଭୂତା' କହୁକହୁ ଅଚେତ ହୋଇଗଲା । ଲୋକମାନେ ମୁହଁରେ ପାଣି ଛିଟି ସାହାମ କଲେ ।

ଠିକ୍ ତା ପରେପରେ ଆଉ ଜଣେ ଲୋକ । ତା ମୁହଁ, ବେକ, ପ୍ୟାଣ୍ଟ ଜାମା କାଦୁଅରେ ଜୁଡ଼୍‌ବୁଡ଼୍ । "ଭୂତଭୂତ" କହି ସେ ମଧ୍ୟ ଆସି ସେଠାରେ ପଡ଼ିଗଲା ।

ମହେଶ୍ୱରର ଚେତା ଆସିଯାଇଥାଏ । ସେ ଗଣେଶକୁ ଖୁଣ୍ଟିଦେଇ କହିଲା, "ଭୂତା ମୋତେ ଖାଇବ ବୋଲି ଗୋଡ଼ାଉଛି ।"

ଗଣେଶ ଠିକ୍ ସେହିପରି ଅଭିଯୋଗ କଲା, "ଏଇଟା ଭୂତ, କୌଶଳ କରି ମୋତେ ମଶାଣିକୁ ନେଇ ଯାଉଥିଲା । ସେଠାରେ ବେକ ମୋଡ଼ି ରକତ ପିଇଥାଆନ୍ତା ।"

ହରି ନାମ ଶୁଣିଲେ ତ ଭୂତପ୍ରେତ ଘୁଞ୍ଚି ପଳାନ୍ତି । ଶାଇଁନ ବେଳରେ ଜଣାଗଲା, କେହି ଭୂତା ନୁହନ୍ତି କି ଭୂତ ନୁହନ୍ତି । ଉଭୟେ ମଣିଷ ।



# ଚଉଦ ପୋଏଁକୁ ସାତ ଚକୁଳି

ବୁଢ଼ୀ—ମୁଁ ଚାରିଟା ଖାଇବି ।

ବୁଢ଼ା—ନା, ମୁଁ ଚାରିଟା ଖାଇବି ।

ବୁଢ଼ୀ—(ଗର୍ଜିଉଠି) ନା, ନା; ମୋର ଚାରି ।

ବୁଢ଼ା—(ସେନ୍ଧପର ସ୍ୱରରେ) ମୁଁ ଏତେ କାମ କଲି, ପିଠଉ ବାଟିଲି, ପିଠା କଲି । ମୁଁ ଖାଇବି ତିନ୍; ଏ ଶୋଇଶୋଇ ଆସି କହିଲା, ମୁଁ ଖାଇବି ଚାରି । ଘାଗ !

ବୁଢ଼ୀ—ମୁଁ କଅଣ ଖାଲି ଶୋଇଛି ? ମୁଁ ବେମାର । ମୋ ଅଣ୍ଟା ଦରଜ, ମୁଣ୍ଡ ବିନ୍ଧୁଛି, ପେଟ ଟଣଟଣ କରୁଛି, ଆଣ୍ଠୁଗଣ୍ଠି କଟ୍‌କଟ୍ ହେଉଛି । ଯା ବୋଲି ମୁଁ ଅଳପ ଖାଇବି ? ନା, ମୁଁ ଖାଇବି ଚାରି, ତୁ ଖାଇବୁ ତିନ୍ ।

ଏ କି କଳିରେ ବାବା ! କଅଣ ବା ଖାଇବେ ? ଦୁହିଁଙ୍କୁ ଦୁହେଁ ବଳି ତ ପେଟୁ ।

ସେଇ କଥାଟି କହୁଛି ।

ଆମ ଗାଁ ମୁଣ୍ଡରେ ଗୋଟିଏ ଏକୁଟିଆ କୁଡ଼ିଆ ଘର । ସେଥିରେ ରହନ୍ତି ଦୁଇଟି ପ୍ରାଣୀ—ବୁଢ଼ା, ବୁଢ଼ୀ । ବଡ଼ ଗରିବ ।

ବୁଢ଼ା ନିତି ସକାଳୁ ଉଠି ମୂଲ ଲାଗିବାକୁ ଯାଏ । ହାଡ଼ଭଙ୍ଗା କାମ ପରେ ସନ୍ଧ୍ୟାକୁ ଘରକୁ ଫେରେ ।

ବୁଢ଼ୀର କାମ କେବଳ ଖାଇବା ଆଉ ଶୋଇବା । ଦିନଯାକ ବିଛଣାରେ ଶୋଇ ରହିଥାଏ । ରାତିଦିନ ସବୁବେଳେ ଖାଲି ଶୋଇବା । ତା ବିଛଣାଟି ଭଲ ତ ସେ ଭଲ ।

ପିଲାପିଲିକା କେହି ନାହାନ୍ତି; ଲେ ଲେଞ୍ଜବ କିଛି ନାହିଁ ।

ପୁଣି ବୁଢ଼ୀ ଭାରି କଳିହୁଡ଼ୀ । ସବୁବେଳେ ପାଟିତୁଣ୍ଡ କରୁଥାଏ । ଗଜରଗଜର ହେଉଥାଏ । ସାଇ ପଡ଼ିଶା ଲୋକଙ୍କ ସାଙ୍ଗରେ କଳି ଲଗାଏ । ତେଣୁ କେହି କେବେ ତା ଘରକୁ ଆସନ୍ତି ନାହିଁ କି ତାକୁ ପଚାରନ୍ତି ନାହିଁ ।

ବୁଢ଼ା ନିତି କାମରୁ ଫେରି ରୋଷାଇ କରେ । ବୁଢ଼ୀକୁ ଖାଇବାକୁ ଦିଏ, ନିଜେ ଖାଏ । ଘରଦ୍ୱାର ସଫା କରେ, ବାସନ ମାଜେ ।

ବୁଢ଼ୀ କେବେହେଲେ ବିଛଣାରୁ ଉଠେ ନାହିଁ କି କୁଟା ଖଣ୍ଡିକୁ ଦି'ଖଣ୍ଡ କରେ ନାହିଁ । ଓଲଟି ବୁଢ଼ାକୁ କହେ—ଦେଖିଲ, ଦେଖିଲ, ମୋ ଅଣ୍ଟାଟା କେତେ ଦରଜ ହୋଇଛି । ପେଟଟା କେମିତି ଚଣଚଣ କରୁଛି, ତୁମେ ଜାଣିପାରୁ ନାହଁ ? ଓଃ—ଆଣ୍ଠୁ ଗଣ୍ଠି—ଏକାବେଳକେ କପ୍‌କପ୍ ହେଉଛି । ମିଛ ମନେ କରୁଛ ? ହାତ ଶମି ଦେଖୁ ନାହଁ ।

ସେଦିନ ପ୍ରଥମାଷ୍ଟମୀ । ଘରେଘରେ ପିଠା ହେଉଛି । ପୁଣି ବୁଢ଼ା ବାପମାଆଙ୍କର ପୋଡ଼ୁଆଁ ପୁଅ । ତେଣେ ବୁଢ଼ୀଟି ମଧ୍ୟ ପହିଲି ଝିଅ । ଦୁହିଁଙ୍କର ପ୍ରଥମାଷ୍ଟମୀ ।

ବୁଢ଼ା ସେଦିନ କାମରୁ ଆସି ଚାଉଳ ନଡ଼ିଆ ବାଟିଲା । ଚୁଲି ଲଗାଇ ପିଠା କଲା ।

ବୁଢ଼ୀ ଶୋଇରହି ସବୁ କଥା ଜାଣୁଥାଏ ।

ସେ ଗଣିଲା, ଚଉଦ ଥର ସେଁ ହୋଇଛି । ଆଉ ବହୁତ ବେଳଯାଏ କିଛି ଶବ୍ଦ ଶୁଭିଲା ନାହିଁ । ବୁଢ଼ା ଆସି ହାତ ଧୋଇଲା ।

ବୁଢ଼ୀ ଭାବିଲା, ଚଉଦ ସେଁକୁ ତ ସାତୋଟି ଚକୁଳି ହେଲା । ଭାଗ ଛାଡ଼ିବ କେମିତି ?

ସେ ଧଡ଼ପଡ଼ ହୋଇ ବିଛଣାରୁ ଉଠି ଆସିଲା । ଚକା ପକାଇ ବସିପଡ଼ିଲା । କହିଲା, "ଆଣ, ପିଠା ଦିଅ, ମୁଁ ଚାରିଟା ପିଠା ଖାଇବି ।"

ବୁଢ଼ା ଚିଙ୍କାରି ଉଠିଲା—ଓଃ, ବିଛଣାରୁ ଆସି କହିଲ, ଚାରିଟା ପିଠା ଖାଇବି ! ନା, ତୁ ତିନିଟା ଖା, ମୁଁ ଖାଇବି ଚାରିଟା ।

ବୁଢ଼ୀ କହିଲା—ନା, ମୋର ଚାରି, ତୁମ ଭାଗରେ ତିନି ।

ବୁଢ଼ା କାହିଁକି ଛାଡ଼ିବ ? ସେ ପାଟି କରି ଉଠିଲା, "ନା, ମୋର ଚାରି, ତୋର ତିନ୍ ।

ଦୁହିଁଙ୍କ ଭିତରେ ଲାଗିଗଲା କଳିଗୋଳ, ପାଟିତୁଣ୍ଡ, ରାଗରୁଷା । ପିଠାଗୁଡ଼ିକ ବୋଧହୁଏ ମୁରୁକି ମୁରୁକି ହସୁଥିବେ ।

ଶେଷରେ ଠିକ୍ ହେଲା, "ଆଜି ପିଠା ଖାଇବା ନାହିଁ, ଚାଲ ଶୋଇବା । କାଲି ଯେ ଆଗ ଉଠିବ, ସେ ଖାଇବ ତିନି; ଯେ ପଛରେ ଉଠିବ, ସେ ଖାଇବ ଚାରି ।"

ଦୁହେଁଯାକ ଶୋଇପଡ଼ିଲେ । କିଛି ଖାଇ ନାହାନ୍ତି । ଘର ଲୋକ, ନିଦ ହେବ କେମିତି ? ଖାଲି ଆଖି ବୁଜି ପଡ଼ି ରହିଥାଆନ୍ତି ।

ରାତି ପାହିଲା, ଦିନ ହେଲା । ସକାଳ ଯାଇ ଖରାବେଳ ଆସିଲା । ତଥାପି କେହି ବିଛଣାରୁ ଉଠୁ ନ ଥାନ୍ତି କି ଆଖି ବି ଫିଟାଉ ନ ଥାନ୍ତି । ଯେ ଆଗ ଉଠିବ, ତା ଭାଗରେ ଯେ ତିନିଟା ପଡ଼ିବ !

ଦିନ ଯାଇ ସଂଧ୍ୟା ହେଲା । ଗାଁ ଲୋକେ ଦେଖିଲେ, ବୁଢ଼ାଆଘରେ ସୋରଶବ୍ଦ କିଛି ନାହିଁ । ବୁଢ଼ୀ ପାଟିରେ ତ ଗାଁ କମ୍ପୁଥାଏ । ଆଜି କଅଣ ହେଲା ?

କେତେ ଜଣ ଘରଭିତରକୁ ପଶି ଆସିଲେ । ଦେଖିଲେ, ବୁଢ଼ାବୁଢ଼ୀ ଦୁହେଁଯାକ ଶୋଇଛନ୍ତି, ଆଖି ବନ୍ଦ ।

ସେମାନେ ଭାବିଲେ, ଦୁହେଁଯାକ ମରିଗଲେଣି । ମଡ଼ା ମଶାଣିକୁ ନେଇ ପୋଡ଼ି ନ ଦେଲେ ପଚାସଢ଼ା ଗନ୍ଧ ହେବ । ଏ ଗ୍ରାମରେ ରହି ହେବ ନାହିଁ ।

ଡୋକେଇ ବନ୍ଧାଗଲା । ବୁଢ଼ାବୁଢ଼ୀଙ୍କୁ ଟେକି ଆଣି ସେଥିରେ ଶୁଆଇ ଦିଆଗଲା । ଚାରି ଜଣ ଡୋକେଇ କାନ୍ଧେଇଲେ, ଆଉ ତିନି ଜଣ ସେମାନଙ୍କ ପଛେପଛେ ଚାଲିଲେ ।

ଡାକ ପଡ଼ୁଥାଏ, "ରାମ ନାମ ସତ୍ୟ ହେ, ହରି ନାମ ସତ୍ୟ ହେ ।"

ମଶାଣିରେ ଜୁଇ ଖୋଳା ହେଲା । କାଠ ସଜାଡ଼ି ଚିତା ତିଆରି କରାଗଲା । ବୁଢ଼ାବୁଢ଼ୀ ଏହା ଜାଣୁଛନ୍ତି, ତଥାପି କିଛି କହୁ ନ ଥାନ୍ତି । ଯେ ଆଗ ପାଟି ଫିଟାଇବ, ତା ଭାଗରେ ତିନିଟା ପଡ଼ିବ ଯେ । ସେ କମ୍ ଖାଇବ କାହିଁକି ?

ଶେଷକୁ ଦୁଇଟିଯାକ ମଡ଼ା ଚିତା ଉପରେ ରଖାଗଲା । ତଳେ ନିଆଁ ଲଗାଇ ଦିଆଗଲା । ନିଆଁ ହୁତୁହୁତୁ ଜଳିବାରୁ ଏକସମୟରେ ଦୁହେଁଯାକ ତଳକୁ ଡେଇଁପଡ଼ିଲେ । ପାଟିକରି କହୁଥାଆନ୍ତି, "ମୁଁ ପଛ, ମୁଁ ଚାରିଟା ଖାଇବ । ତୁ ଆଉ ତୋ ଭାଗ ତିନିଟା ।"

ଯୋଗକୁ ମଶାଣିକୁ ଯାଇଥିଲେ ତ ସାତଜଣ । ଭୟରେ ସେମାନେ ଛୁଟ । ଭାବିଲେ ବୁଢ଼ାବୁଢ଼ୀ ମରି ଭୂତ ହୋଇଛନ୍ତି । ଆମ ସାତ ଜଣଙ୍କୁ ଖାଇବା ପାଇଁ ଏ ପାଟି—ତାଙ୍କ ଭିତରେ ଏପରି କଳି ।

"ଆରେ ବାପ୍‌ରେ, ଭୂତ ଆମକୁ ଖାଇଗଲେ !" ପ୍ରାଣଆତଙ୍କରେ ଛନ୍‌ଛନ ହୋଇ କଏ କୁଆଡ଼େ ପଳାଇଗଲେ ।

ବୁଢ଼ାବୁଢ଼ୀ ଘରକୁ ଆସିଲେ ପିଠା ଖାଇବା ପାଇଁ । ଗ୍ରାମର ଲୋକମାନେ ଦେଖି ତ କାବା । ମଣ୍ଡାଚଣ୍ଡିଆଙ୍କଠାରୁ ଆଗରୁ ଶୁଣି ସେମାନେ ଗୋଟାଏ ଗୋଟାଏ ନିଆଁ ମଶାଲ ଧରି ଗ୍ରାମମୁଣ୍ଡରେ ଠିଆ ହୋଇଥିଲେ— ଭୂତ ଦୁହିଙ୍କୁ ପୋଡ଼ି ଜାଳଦେବା ପାଇଁ । ବୁଢ଼ାବୁଢ଼ୀଙ୍କୁ ଦେଖିବା ମାତ୍ରକେ ସମସ୍ତେ ଏକସମୟରେ ତାଙ୍କ ପାଖକୁ ଦଉଡ଼ିଲେ ମଶାଲ ଦେଖାଇ ।

ବୁଢ଼ାବୁଢ଼ୀ ଆଉ କଅଣ ସେଠାରେ ରହନ୍ତି ? ବାଟ ଅବାଟ ନ ମାନି ଏକା ନିଶ୍ୱାସକେ ଧାଇଁ ପଳାଇଗଲେ । ପଛକୁ ଚାହିଁବାକୁ ଆଉ ସେମାନଙ୍କର ସାହସ ହେଲା ନାହିଁ ।

ସଞ୍ଜ ପାହିଲାବେଳକୁ ଗୋଟିଏ ନଈକୂଳରେ ପହଞ୍ଚିଲେ । ଝଙ୍କାଳିଆ ବରଗଛମୂଳେ ଠିଆ ହୋଇ ନିଶ୍ୱାସ ମାରିଲେ ।

ଥଣ୍ଡା ନିଆଁର ଚେଙ୍ଗା ଖାଇ, ଆଉ ଦଉଡ଼ ଦଉଡ଼ ବୁଢ଼ୀର ଅଣ୍ଟା ଦରଜ ଗୁଡ଼ିଗଲା । ଆଣ୍ଠୁ ଗଣ୍ଠି କଟ୍‌କଟ୍ ହେବା ଆଉ ରହିଲା ନାହିଁ । ସେ ଭୂଷାଇବାସ, କାମବାମ ପଳେଇନ କଲା । ବୁଢ଼ାବୁଢ଼ୀ ଏଣିକି ସୁଖରେ ରହିଲେ ।



# ଯୁସେର ମାଛଚାଷ

ଚାଷ କର ଆଜ            ଆଜ ଚାଷ କର
ପଢ଼ିଅଛୁ କେତେ ଦୂର,
ଧାନଚାଷ କର            ଗହମ, ମାଣ୍ଡିଆ
ହରଡ଼ ଚାଷ ଆଦର।
ମହୁ ଚାଷ କର            କୁକୁଡ଼ା ଛାଗଳ
ଘାସ ଚାଷ କର ପୁଣି,
ଅଭାବ ଆମର            ନ ରହିବ କିଛି
ବିହନକୁ ଦେଲେ ବୁଣି।

ମାଛ ଚାଷ କର            ଗଛ ଚାଷ କର
ଚାଷରେ ଦିଅ ରେ ମନ
ଦୁଧ ମହୁ ଏଣୁ            ଦେଶରେ ଭାସିବ
ପୂରିଯିବ ଘରେ ଧନ।
କଦଳୀ ନଡ଼ିଆ            ପଣସ ସପୁରି
ଲେମ୍ବୁ ଆମ୍ବ ଲିଚୁ ଆତ,
ଚାଷ କଲେ ଆମେ            ସୁଖରେ ଚଳିବା
ନ ପାତିବା ଆନେ ହାତ

×            ×            ×

ଛଡ଼ଙ୍କା ବଳେଇ            ମାଛ ଚୋରି କରି
ପିଠିରେ ପାହାର ଖାଇ,
ମନରେ ଭାବିଲା            ଆଜ କେବେ ହେଲେ
ଚୋରି ମୁଁ କରିବି ନାହିଁ।
ଆଜଠାରୁ ମୋର            ବଗିଚା ଭିତରେ
କରିବି ମୁଁ ମାଛ ଚାଷ,
ମାଟି ହାଣି ଚାଷ            ଗଛ ଲଗାଇବି
ବାଛିଦେଇ ସବୁ ଘାସ।

ମନ୍ଧାରେ ଦେବି ମୁଁ ଯତନରେ ପାଣି
ଗଛ ସବୁ ଯିବ ବଢ଼ି,
ଡାଳ ପତ୍ର ମେଲି ବଢ଼ିବ ଉଛୁଳି
ଧରିବ ଯେ କେତେ କଢ଼ି ।
ଫୁଲ ଫୁଟି ଯେବେ ପାଖୁଡ଼ା ଝଡ଼ିବ
ଓହଳିବ ମାଛ ଫଳ,
ଲେଣ୍ଡି ଲେଣ୍ଡି ମାଛ ଦେଖିଦେଲେ ଥରେ
ପାଟିରୁ ବହିବ ଲାଳ ।
ଖାଇ ଖାଇ ମୋର ପେଟ ପୂରିଯିବ
ଆଉ ଯା ରହିବ ବାକି,
ଗୋଟିଗୋଟି କରି ବାଣ୍ଟିଦେବି ସବୁ
ବିଲେଇମାନଙ୍କୁ ଡାକି ।
ବରଷା କାଳରେ ମାଛ ବୃଷ୍ଟି କଲେ
ବଢ଼ିଯିବ ମୋର ଭାଉ,
ଭାଲୁର ମାଲୁର କଉ ଦଣ୍ଡିଶିଆ
ହେବେ କେତେ ହାଉଯାଉ ।
ଏହି କଥା ଯେବେ ସବୁ ବିଲେଇଙ୍କୁ
ଛଉକା ଡାକି କହିଲି,
"ଏତେ ବୋକା ତୁ ରେ" କହିଲେ ସକଳେ
କଥାଟି ମୋର ସଇଲା ।

———

# ବୋକା କାଉ

କାଉଟିଏ ବସିଥିଲା ଗଛ ଡାଳ ଉପରେ
ଥଣ୍ଟରେ ତା ଧରିଥିଲା ଆହାର,
କାହୁଁ ଆସି ବିଲୁଆଟି ତଳେ ରହି ବୁଝିଲା,
ଖାଇବାକୁ ମନ ହେଲା ତାହାର ।

କହିଲା ସେ ଧୀରେଧୀରେ ଡାକି, "କାଉରାଣୀ ତୁ
ରୂପଟି ତୋ ଦିଶୁଅଛି ଉଜ୍ଜଳ
କହୁଥିଲେ ପିଲା ଦିନେ ମୋର ଆଗେ ବାପା ଯେ
କଣ୍ଠକୁ ତୋ ନାହିଁ ଆଉ ତୁଳ ।

ଗାଆ ଭଲ ଗୀତଟିଏ ତଳେ ବସି ଶୁଣିବି,
ଯୁଗେଯୁଗେ ନାମ ତୋର ରହିବ
ଭୁଲିଗଲା ବୋକା କାଉ ବିଲୁଆର କଥାରେ
ଇଚ୍ଛା ହେଲା ଗୀତ ଥରେ ଗାଇବ ।

କାଆ କାଆ କାଆ କାଆ ସ୍ୱର ଦେଇ ଗାଇଲା
ହୋଇଗଲା ମେଲା ଥଣ୍ଟ ତାହାର
ବିଲୁଆଟି ତଳେ ବସି ମଜା କରି ଖାଇଲା
ପଡ଼ିଯାନ୍ତେ ଧରିଥିବା ଆହାର ।

ଖାଇସାରି ମୁହ ଛୁଟିଛୁଟି ସେହୁ କହିଲା,
"ନାହିଁ ଆଉ ବୋକା କେହି ତୋ ପରି
ଜାନରେ ମୋହର ଆଉ ପକା ନାହିଁ ଅଡଳା
କାଆ କାଆ ରଡ଼ି କରି ଏପରି ।"

---

# ବାଇଚଢ଼େଇ

ବାଳକ—ବାଇଚଢ଼େଇରେ ବାଇଚଢ଼େଇ
ବାଆ ଆସିଲାଣି ଧୂଳି ଉଡ଼େଇ ।
ଟିପିଟିପି ପଡ଼େ ବରଷା ଧାର
ବୁଡ଼ିଗଲେ ରବି ହେଲା ଅନ୍ଧାର ।
ଏତେ ଉପରେ ତୁ ଝୁଲୁଛୁ ଏବେ,
ମରିଯିବୁ ତଳେ ପଡ଼ିବୁ ଯେବେ ।

ଚଢ଼େଇ—ନ ମରଇ ମୁହିଁ ଆରେ ବାଳକ,
ଏହିପରି ଅଛୁ କାଳକାଳକ ।
ତୁମ ଘରଠାରୁ ମୋ ଘର ଟାଣ
ହୋହଲିବ ହେଲେ ବାଆ ପବନ ।

ବାଳକ—ନେବୁ କରେ ତୋର ଘରକୁ ମୋତେ,
କୋଳୀ ଖେଳୁଥିବି ତୋହ ସଙ୍ଗତେ ।
ଉଡ଼ି ବୁଲିବି ମୁଁ ଆକାଶ ସାରା,
ଦେଖିବି ଚନ୍ଦର ସୂରୁଯ ତାରା ।

ଚଢ଼େଇ—ରହିଛୁ ମଣିଷେ ତୁ ତଳ ଘରେ,
ଆମେ ରହୁଅଛୁଁ ଗଛ ଉପରେ ।
ଆମକୁ ତ ତଳେ ଅଡ଼ୁଆ ବଡ଼,
ଭଲ ନ ଲାଗିବ ତୋତେ ଉପର ।
ଯାହା ପାଇଁ ଯାହା ଅଛି ଭିଆଣ
ନ ହେବ ତା ଭଲ କରିଲେ ଆନ ।

———

# ମାଙ୍କଡ଼ ଓ କୁମ୍ଭୀର

ମାଙ୍କଡ଼ ଗୋଟାଏ ସୁଖେ ରହୁଥାଏ ନଈକୂଳ ଗଛ ଡାଳେ
ଅଗାଧ ଜଳରେ କୁମ୍ଭୀରଟି ଥାଇ ତାକୁ ଦେଖି ମନେ ଭାଳେ;

ଖାଇଛୁ ମଣିଷ, ମେଣ୍ଢା, ଛେଳି କେତେ ଖାଇଛୁ ମୁଁ ଗୋରୁଗାଈ,
ମାଙ୍କଡ଼ କଲିଜା କପରି ସୁଆଦ ଜାଣି ତ ପାରିଲି ନାହିଁ ।

ଚାଖିବି ଥରେ ମୁଁ ମାଙ୍କଡ଼ କଲିଜା, ବୋଧ ହେବ ମୋର ମନ,
କପଟ କରି ସେ ଗଛ ମୂଳେ ଯାଇ ବାନରେ କହେ ବଚନ,

"କାହିଁକି ସଙ୍ଗାତ ଗଛଟାରେ ଏକା ମଉନେ ରହିଛ ବସି ?
ତଳକୁ ଆସିଲେ ଦିନ କଟୁଥାନ୍ତା ଗପ କରି, ଖେଳି, ହସି ।

ସାଙ୍ଗସାଥୀ ବିନା ଅସାର ଜୀବନ, ଦୁଲୁକି ଉଠୁଛି ଛାତି,
ଛଟପଟ ହୁଏ ଏକାକୀ ଏଠି ମୁଁ ନ ପାଇ କାହାକୁ ସାଥୀ ।

ସୂର୍ଯ୍ୟ ବିନା ମଞ୍ଜି ସୁନ୍ଦର ହେବ କି ସରସ କି ହେବ କେବେ ?
ତେସନ ଜୀବନ ଅଟେ ଅକାରଣ ବନ୍ଧୁ ସଖା ନାହିଁ ଯେବେ ।"

ଗଛରୁ ମାଙ୍କଡ଼ ଆସିଲା ତଳକୁ କୁମ୍ଭୀର କଥାରେ ଭୁଲି,
କହଇ ସେ ପୁଣି, "ଆସ ହେ ସଙ୍ଗାତ, ଆର ପାଖେ ଯିବା ବୁଲି '

ନଦୀ ଆର କୂଳେ ପାଚି କେତେ ଆମ୍ବ ହାଙ୍ଗି ପଡ଼ୁଅଛି ଡାଳ,
ବାସର ମହକ ପାଇଲେ ତୁମର ପାଟିରୁ ବହିବ ଲାଳ ।

ବସ ମୋ ପିଠିରେ ନେବି ଆର ତୀରେ"—କହନ୍ତେ କୁମ୍ଭୀର ହସି,
ନ ଜାଣି ବାନର ଆନନ୍ଦେ କୁମ୍ଭୀର ପିଠି ପରେ ଗଲା ବସି ।

କୂଳରୁ ପହଁରି ନଈ ମଝି ଗନ୍ତେ କୁମ୍ଭୀର ମିଳାଇ ଯାଇ,
କହିଲା, "ମୂର୍ଖ ଏ ଜଗତେ ଆଉ ତୋହ ପରି କେହି ନାହିଁ ।

ଚିରି ତୋ କଲିଜା ଖାଇବାକୁ ମନ, ତେଣୁ କରି କଉଶଳ,
ଆଣିଛି ଏଠାରେ ବୁଡ଼ାଇବି ଏବେ, ଆମ୍ବ କଥା ସବୁ ଛଳ ।"

କହଇ ବାନର, "କି କହ ସଙ୍ଗାତ, ଏହି ଗୁରୁ କଥା ପାଇଁ,
ଆଗରୁ ନ କହି ଆଣିଲ ଏଠାରେ ମିଛେମିଛେ କଷ୍ଟ ପାଇ ।
ଗଛୁ ଗଛେ ମୁହିଁ ଡେଇଁଥାଏ ବୋଲି କଲିଜା ହଜିବା ଡରେ,
ଗୁପତରେ ତାହା ରଖି ଦେଇଥାଏ ଆମ୍ବଗଛ କୋରଡ଼ରେ ।
କହିଥିଲେ ଆଗୁଁ ଆଣିଥାନ୍ତି ସିନା, ସେ କଥା କହିଲ ନାହିଁ,
ଫମ୍ପା ଦେହ ଗୋଟା ଖାଇଲେ କି ଲାଭ, ହେବ ଖାଲି ହାଇଁପାଇଁ ।
ଗଛମୂଳେ ଏବେ ଫେର ହେ ସଙ୍ଗାତ, କୋରଡ଼ୁ କଲିଜା ଆଣି,
ଗୋଟିଏ ରଖି ମୁଁ ଆରଟିକୁ ଦେବ ତୁମ ମନ କଥା ଜାଣି ।"
ନ ବୁଝି କୁମ୍ଭୀର ଫେରିଲା ସେଠାରୁ ପହଞ୍ଚିଲା ଆସି କୂଳେ,
ପିଠିପରୁ ଡେଇଁ ମାଙ୍କଡ଼ ଝଟରି ଚାଲିଗଲା ଗଛ ମୂଳେ ।
ଗଛ ପରେ ଚଢ଼ି ସବା ଅଗ ଡାଳେ ବସି କହେ, "ବୋକା ଆରେ,
କଲିଜାକୁ କେବେ ଦେହରୁ ଅଲଗା କରି କେହି ରଖିପାରେ ?
କହିଥିଲୁ ପରା ମୁଁ ବଡ଼ ମୂରୁଖ, ହେଲି ତୋ କଥାରେ ବଣା,
କିଏ ସେ ମୂରୁଖ, ଚତୁର ବା କିଏ, ପଡ଼ିଗଲା ଏବେ ଜଣା ।
ମୋହଠାରୁ ବଳି ବଡ଼ ମୂରୁଖ ତୁ, ତୋ ପରି ଆଉ କେ ନାହିଁ ।"
ବାନର କପଟ ବୁଝିଲା କୁମ୍ଭୀର ପଳାଇଲା ଲାଜ ପାଇ ।
କପଟ ବଳରେ ଆନକୁ ଠକିଲେ ନିଜେ ଠକିହେବ ଦିନେ,
ଆନ ପାଇଁ ଖାତ ଖୋଳିଲେ ତହିଁରେ କେ ପଡ଼ିବ ତୁମ ବିନେ ?

———

# ଦୁଇ ଭାଇ

ଭୋଗମୁଣ୍ଡ ନାମ          ଗହନ ଜଙ୍ଗଲେ
ଆଦିବାସୀ ଗ୍ରାମ ନ ହୁଏ ଜାଣି,
ଗହନ ପାହାଡ଼ୁ          ବହି ଆସୁଥାଏ
ଝୁରୁଝୁରୁ ନାଦେ ଝରଣା ପାଣି ।

ଦଶ ପନ୍ଦରଟି          ଗ୍ଲେଣ୍ଟ କୁଡ଼ିଆ ଲେଁ
ଚଉଦଉ ବଣ ରହିଛି ଘେରି,
ହରିଣ ସୁନ୍ଦର          ଶୋଭା ଦେଖି ଆସି
ସହଜରେ ତହୁଁ ନ ଆସେ ଫେରି ।

ଗୋଟିଏ କୁଟୀରେ          ଦୁଇଟି ସୋଦର
ଆନନ୍ଦ ମନରେ କରନ୍ତି ବାସ,
ପିତାଙ୍କ ଅମଳୁ          ଜଙ୍ଗଲ ପୋଡ଼ି ଲେ
କରୁଛନ୍ତି ଭୂମି କେତେକ ଚାଷ ।

ମାଣ୍ଡିଆ, କାନ୍ଦୁଲ          ଫସଲ ଉଠାଇ
ଦୁଃଖକଷ୍ଟେ କାଟି ଦେଉନ୍ତି ଦିନ;
ଦୁଃଖ କଷ୍ଟ କରୁ          ନ ପାରନ୍ତି ଜାଣି
ହିଂସା ଦ୍ୱେଷ ଯେଣୁ ଛୁଇଁ ନ ମନ ।

ବଣମଲ୍ଲୀ ସମ          ସରଳ ସୁନ୍ଦର
ଢଳଢଳ ସଦା ତାଙ୍କ ଅନ୍ତର,
କାହିଁ ଆସି କୀଟ          ପଶିଲା କୁସୁମେ
ଘଉଠାରୁ ଭାଇ କଲା ଅନ୍ତର ।

ବଡ଼ ଭାଇଙ୍କର          ପାଞ୍ଚ ସାତ ପିଲା
ତାଙ୍କ ଲାଗି ଖର୍ଚ୍ଚ ହୁଏ ବହୁତ,
ସାନ ଭାଇ କହେ          ନ ସମ୍ଭବ ଏକା
ଦାମ କରକର ମରୁଛି ମୁଁ ତ,

ତୁମ ପିଲା ସବୁ ପାଉଛନ୍ତି ଖାଇ
ଆକଠାରୁ ମୂର୍ଚ୍ଛି ହୋଇବ ଭଲେ”
ବୁଝାଇଲେ ଯେତେ ବଡ଼ ଭାଇ ବସି
କିଛି ନ ଶୁଣିଲେ ଅଲଗା ହେଲେ ।
ଘର ଖଣ୍ଡିମାନ ଭାଗ ବାଣ୍ଟିନେଲେ
କୁକୁଡ଼ା ଛେଳି ଯାହା ବା ଥିଲେ,
ମାଣ୍ଡିଆ, କାନ୍ଦୁଲ ବଳଥିଲା ଯାହା
ଅଧା ଅଧା କରି ସକଳ ନେଲେ ।

ଭିନେ ହେଲେ ପିଲା ସାନ ଭାଇ, ମନ
ନ ଲଗିଲା କାମେ ହେଲା ଅଧୀର,
ସ୍ତ୍ରୀ ଧନ ଘରେ ସଙ୍ଗେ ଶୋଇ ସେ
ଭାବିଭାବି ମନେ କରିଲା ସ୍ଥିର ।
ପିଲାଙ୍କ ମୁଖରୁ ଛଡ଼ାଇ ଆଣିଲି
ଅଧେ ଖାଦ୍ୟଶସ୍ୟ ଅତି ନିଷ୍ଠୁର,
ଗୁପତରେ କିଛି ରଖିଆସିଲେ ମୁଁ
ଦୁଃଖକଷ୍ଟ ତାଙ୍କ ହୋଇବ ଦୂର ।

ଟୋକାଇରେ କିଛି ଖାଦ୍ୟଶସ୍ୟ ଧରି
ଗଲା ବଡ଼ ଭାଇ ଦୁଆରେ ଧୀରେ,
ବଡ ଭାଇ ମନ ତେଣେ ତ ଭାବିଲା
“ସାନ ଭାଇ ମୋର କଷ୍ଟରେ ଚଳେ ?
ପିଲା ଲୋକ ସେ ତ କାମକୁ ନ ପାରେ
ରହୁଥିବ ଅଧା ଲୋକ ଶୋଷରେ,
ଗୁପତରେ ନେଇ ଖାଦ୍ୟଶସ୍ୟ କିଛି
ରଖିଆସିବି ମୁଁ ତାହାର ଘରେ ।”

ଅନ୍ଧାର ରାତରେ ସାନ ଭାଇ ମୁଣ୍ଡେ
ଧରିଛି ଟୋକେଇ ମାଣ୍ଡିଆ ଭରି,
ଆସୁଆସୁ ଦେଖେ ଆରୁ କେ ଆସୁଛି
ଭାବିଲା ମନରେ ଚୋର କି ପରି ।

'ହେର ହେର' ବୋଲି  ଡାକ ଦେଇ ଉଠି
ଝପ୍ କରି ପଡ଼ିଗଲା ସେ ଘରେ,
ବଡ଼ ଭାଇ ଆସି  କୁଣ୍ଢାଇ ଧଇଲା
ଦେଖିଲା ମାଣ୍ଡିଆ ବୁଣିଛୁ ତଳେ ।

ତାହା ମୁଣ୍ଡ ବୋଝ  ତଳେ ପଡ଼ିଗଲା
ମାଣ୍ଡିଆ, କାନ୍ଦୁଲି ଏକାଠି ହେଲା,
କାହାରି ପାଟିରୁ  ଆଉ ନାହିଁ କଥା
ମନ-ଚିନ୍ତା ସବୁ ଜଣାଇଦେଲା ।

ଦୁହେଁ ଦୁହିଁଙ୍କର  ମନ କଥା ଜାଣି
କୁଣ୍ଢାକୁଣ୍ଢି ହୋଇ ରହିଲେ ଠିଆ,
ସାନ ଭାଇ ନେତ୍ରୁ  ବହେ ଲୁହଧାର,
କହେ ବଡ଼ ଭାଇ, "କାନ୍ଦୁଛୁ କିଆଁ ?

ମାଣ୍ଡିଆ କାନ୍ଦୁଲି  ସମ ଆମେ ଦୁହେଁ
ମିଳିମିଶି ପୂର୍ଣ୍ଣ କରିବା ଘର,
ମୋହ ପିଲାଠାରେ  ଏତେ ତୋ ଶରଧା
କରି ନ ପାରିବ ପାଶୁଁ ଅନ୍ତର ।"

ସାନ ଭାଇ କହେ  କହିକହିଁ କାନ୍ଦି
"ମୋହ ଠାରେ ସ୍ନେହ ଏତେ ତୁମର,
କଳି ନ ପାରିଲି  ସମୁଦ୍ରର ଜଳ
ଛଳେ ହେଲି ମିଛେ ମୂର୍ଖ ପାମର ।

ଆଜ୍ଞା ଦଅ ପଦେ  ତୁମ କଥା ମାନି
ଚଳିବ ମୋହର ଦୋଷ ନ ଧର,"
ପର ଦିନ ଗ୍ରାମ—  ବାସୀଏ ଦେଖିଲେ,
ଦୁଇ ଭାଇଙ୍କର ଗୋଟିଏ ଘର ।

———

ନବ ପନ୍ଥ ପ୍ରିଂ ପ୍ରେସ, କଟକ-୨